# ଜବାବ ଦିଅ

କବିତା ସଙ୍କଳନ



ପ୍ରଫୁଲ୍ଲ ସାମନ୍ତରା

# ଜବାବ ଦିଅ

(କବିତା ସଙ୍କଳନ)

ଲେଖକ :
**ପ୍ରଫୁଲ୍ଲ ସାମନ୍ତରା**
ଲୋହିଆ ଏକାଡ଼େମୀ, ଭୁବନେଶ୍ୱର – ୨୨
ପ୍ରକାଶକ :
**ସମଦୃଷ୍ଟି ପବ୍ଲିକେସନ୍‌ସ**
ଭୁବନେଶ୍ୱର – ୭୫୧୦୨୧
ମୁଦ୍ରଣ :
**ସିଦ୍ଧବୀର ଅଫସେଟ୍,** ବ୍ରହ୍ମପୁର – ୭୬୦୦୦୩
ଡ଼ି.ଟି.ପି.
**ପ୍ରସନ୍ନ କୁମାର ସାମନ୍ତ**
ଲିଜା କମ୍ପ୍ୟୁଟର, ବ୍ରହ୍ମପୁର – ୧୦
ପ୍ରକାଶନ କାଳ : ଅକ୍ଟୋବର ୨୦୧୧
ମୂଲ୍ୟ : ଟ.୫୦/– ମାତ୍ର

**JABAB DIA** (POEM)
Author :
**Prafulla Samantara**
Lohya Acadamy, Unit - IX
Bhubaneswar - 751022
email:psamantara@rediffmail.com
Published By :
**Samadrusti Publications**
Bhubaneswar - 751021
Printed by -
**Sidhaveer Offset,** Berhampur- 760003
D.T.P
**P. K. Samanta**
Liza Computer, Berhampur - 10.
Publication -October 2011
Price - Rs 50/-

# ସୂଚୀପତ୍ର

# ମୁଖବନ୍ଧ

ଆଜି ବିଶ୍ୱବ୍ୟାପୀ ମଣିଷ ସମାଜପାଇଁ ଉଗ୍ର ଆଧୁନିକ ବିକାଶ ବଡ଼ ସଙ୍କଟରୂପେ ଠିଆହୋଇଛି। ଏହି ବିକାଶ ନାମରେ ବିନାଶର ନିଆଁ ସାଧାରଣ ମାଟିର ମଣିଷଙ୍କ ଜୀବନ ଓ ଜୀବିକାକୁ ଛରଖାର କରିଦେଉଛି। ପ୍ରକୃତିଦତ୍ତ ଜମି, ଜଳ, ଜଙ୍ଗଲ ଓ ବାୟୁକୁ ପୁଞ୍ଜିର ଧାରୁଆଛୁରିରେ ଖିନ୍‌ଭିନ୍ କରି ଦିଆଯାଉଛି। ତହିଁରୁ ସହସ୍ରଗୁଣ ନୂଆପୁଞ୍ଜିର ମୁନାଫା ସୃଷ୍ଟି ହେଉଛି। ତାହା ଅନେକ ଲୋକଙ୍କ ରକ୍ତକୁ ପାଣି କରି ମାତ୍ର ଅଳ୍ପ କେତେକଙ୍କ ପ୍ରାଚୁର୍ଯ୍ୟ ପାଇଁ ନିୟୋଜିତ। ପୁଞ୍ଜି ଜରିଆରେ ପୁଞ୍ଜିର ପାହାଡ଼ ତୋଳିବା ପାଇଁ ସବୁଜ ବନାନୀ, ଚିରସ୍ରୋତା ନଦୀ, ଝରଣା, ଅନ୍ନଦାତ୍ରୀ ମାଟି ମାମାନଙ୍କୁ ହତ୍ୟା କରାଯାଉଛି।

ପରିଣାମସ୍ୱରୂପ ଯନ୍ତ୍ରଣା ଭୋଗୁଛନ୍ତି ଗାଁ, ବସ୍ତି, ଜଙ୍ଗଲବାସିନ୍ଦା ମଣିଷମାନେ। ଯନ୍ତ୍ରଣାର ଅନ୍ୟନାମ ବିସ୍ଥାପନ। ଜୀବନଜୀବିକାର ସୁରକ୍ଷା ପାଇଁ ଶପଥ ନେଇଥିବା ନିର୍ବାଚିତ ସରକାରମାନେ ପୁଞ୍ଜିପତିମାନଙ୍କ ଦଲାଲ ହୋଇ ରାଷ୍ଟ୍ରଶକ୍ତିକୁ ଅପବ୍ୟବହାର କରି ବଞ୍ଚିବାର ଅଧିକାରକୁ ଛଡ଼ାଇ ନେଉଛନ୍ତି। କିନ୍ତୁ ସ୍ୱାଭିମାନୀ ମଣିଷମାନେ ନିଜ ସ୍ୱାଧୀନତା ସହ ଭିଟାମାଟିର ସୁରକ୍ଷାପାଇଁ ସଂଗ୍ରାମରତ। ଯେହେତୁ ଏ ମାଟିରୁ ମଣିଷ ସମାଜ, ତାର ସଂସ୍କୃତି ଓ ସଭ୍ୟତା ସୃଷ୍ଟିହୋଇଛି, ଇତିହାସରେ ଅନେକ ସଭ୍ୟତା ଲୋପ ହୋଇଯାଇଛି। ତାର କାରଣ ମଧ୍ୟ ଶୋଷଣ, ଅରାଜକତା ଓ ଅତ୍ୟାଚାର। ଏସବୁର ବିଦ୍ରୋହ ପରେ ନୂଆ ସମାଜ ଓ ନୂଆ ସଭ୍ୟତା ପୁଣି ଠିଆହୋଇଛି। ଆଜି ଆମଦେଶରେ ଏବେ ଚାରିଆଡ଼େ ଜମି, ଜଳ, ଜଙ୍ଗଲର ସୁରକ୍ଷା ସହ ତା ଉପରେ ମାଟିର ମଣିଷମାନଙ୍କ ଅଧିକାର ସାବ୍ୟସ୍ତ ପାଇଁ ପ୍ରତିରୋଧ ଜନଆନ୍ଦୋଳନ ଲାଗିଛି। ଆମ ଓଡ଼ିଶାରେ କାଶୀପୁରଠାରୁ କଳିଙ୍ଗନଗର ପର୍ଯ୍ୟନ୍ତ ଜୀବନକୁ ବଳି ଦେଇଛନ୍ତି ପୋଲିସ ଗୁଳିଆଗରେ। ଆଗକୁ ଅନେକଙ୍କ ଜୀବନ ନେବାକୁ କ୍ଷମତାସୀନ ରାଜନେତାମାନେ ସେମାନଙ୍କ ରାଜନୀତିର ସଂରକ୍ଷକ କମ୍ପାନୀମାନଙ୍କ ପାଖରେ ଚୁକ୍ତିବଦ୍ଧ। ଏହି ସଂଗ୍ରାମସ୍ଥଳମାନଙ୍କୁ ମୁଁ ଯେତେବେଳେ ଯାଉଛି, ସବୁଠି ଶୁଣୁଛି ଗୋଟିଏ ସ୍ୱର ଆମ ଜୀବନଜୀବିକାର ସ୍ରୋତ ଭିଟାମାଟି ଛଡ଼ାଇ ନେବାକୁ ସରକାର ତୁମେ କିଏ? ଜବାବ ବି ମାଗୁଛନ୍ତି ତୁମେ ଦେଇଛ କଣ? ଏପରି କି

ଢିଙ୍କିଆ ଚାରିଦେଶର ବାଳୁତମାନଙ୍କ ପ୍ରଶ୍ନ ? ଚାଷବାସ ଚାଲିଗଲେ ପାଠ କିଏ ଦେବ ? ଏହି ଜବାବ ମାଗିବା ଧ୍ୱନିରେ ମଣିଷ ଖୋଜୁଛି ତାର ଅଧିକାର, ସ୍ୱାଧୀନତା, ସ୍ୱାଭିମାନ, ଅସଲ ଗଣତନ୍ତ୍ର ଓ ସର୍ବୋପରି ଏକ ନୂଆ ଶୋଷଣହୀନ, ସମତାସମ୍ପନ୍ନ ସମାଜ।

ମୁଁ ଯେଉଁ ଧ୍ୱନି ଶୁଣିଛି, ତାକୁ ପରିପ୍ରକାଶ କରିବାକୁ ଯାଇ ପ୍ରତିଧ୍ୱନିଟିଏ ଉପସ୍ଥାପନ କରିବାକୁ ଚେଷ୍ଟା କରିଛି। ହେଲେ ଏ ଲେଖା କେଉଁ ଅଳିଆଗଦାକୁ ଯାଇଥାନ୍ତା ଯଦି ଗତ ମାର୍ଚ୍ଚ ୧୭ ତାରିଖରେ ଏକ ଅଚାନକ ମସ୍ତିଷ୍କ ଅସ୍ତ୍ରୋପଚାର ମତେ ଯଦି ବଞ୍ଚାଇ ପାରିନଥାନ୍ତା।

ଏହାସହ ଅନୁଭବରୁ କିଛି କିଛି ଲେଖିବା ମଧ୍ୟରେ କବିତା ସୃଷ୍ଟି ହୋଇଛି। ଏସବୁ କବିତାରେ ଜୀବନ ଅଛିକି ନାହିଁ, ମୁଁ ଜାଣେନା। କେତେକ ଜୀବନର ପ୍ରତିଧ୍ୱନିକୁ କବିତା ବହି ରୂପେ ଲୋକାର୍ପଣ କରିବାକୁ ମନସ୍ଥ କଲି। ଏହି ମନସ୍ଥ କରିବା ମୂଳରେ ରହିଛି ସମଦୃଷ୍ଟିର ସମ୍ପାଦକ ତଥା ମାଟିର ମଣିଷମାନଙ୍କ ପାଇଁ ଲେଖନୀ ଚାଳନା କରିଚାଲିଥିବା ଶ୍ରୀ ସୁଧୀର ପଟ୍ଟନାୟକଙ୍କ ବାରମ୍ବାର ପ୍ରଶ୍ନ- କେବେ ଆସିବ କବିତା ବହି ? ଶେଷରେ ସେହି ଦାୟିତ୍ୱ ନେଲେ ସମଦୃଷ୍ଟି ତରଫରୁ ପ୍ରକାଶନ ପାଇଁ। ସେଥିପାଇଁ ସମଦୃଷ୍ଟି ପରିବାର ପାଖରେ ମୁଁ କୃତଜ୍ଞ।

ଏହି ଲେଖାଗୁଡ଼ିକୁ ସଂଶୋଧନ କରିବାରେ ମୋରବନ୍ଧୁ ସୁସାହିତ୍ୟିକ ତଥା ସ୍ୱଦେଶୀ ଲେଖକ ମଞ୍ଚର ପ୍ରତିଷ୍ଠାତା ମହାପାତ୍ର ଭାସ୍କର ଗନ୍ତାଏତ୍‌ଙ୍କ ସହଯୋଗ ପାଇଁ ଅଶେଷ ଧନ୍ୟବାଦ ଜଣାଉଛି। ସେ ହିଁ ମୋର ପ୍ରଥମ କବିତା ବହି ***ସବୁରି ଉପରେ ମଣିଷ ସତ୍ୟ***କୁ ପ୍ରକାଶ କରି କବିତା ଲେଖିବାକୁ ଉତ୍ସାହ ଦେଇ ଆସିଛନ୍ତି।

ଏହି କବିତା ବହିକୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଭିଟାମାଟିର ସୁରକ୍ଷା ପାଇଁ ସଂଗ୍ରାମରତ ମା, ଭଉଣୀ, ଭାଇ ତଥା ବାଳକ-ବାଳିକାମାନଙ୍କ ହାତରେ ଅର୍ପଣ କରି ନିଜକୁ ଧନ୍ୟ ମନେକରୁଛି।

## ପ୍ରକାଶକଙ୍କ କଲମରୁ...

ଜଣାଶୁଣା ପରିବେଶବିତ୍ ଓ ସମାଜକର୍ମୀ ଶ୍ରୀ ପ୍ରଫୁଲ୍ଲ ସାମନ୍ତରାଙ୍କ କବିତା ସଙ୍କଳନ 'ଜବାବଦିଅ'ର ପ୍ରକାଶନ ଦାୟିତ୍ୱ "ସମଦୃଷ୍ଟି"କୁ ଦିଆଯାଇଥିବା ଯୋଗୁଁ ଆମେ ଶ୍ରୀ ସାମନ୍ତରାଙ୍କ ନିକଟରେ କୃତଜ୍ଞ ।

ଓଡ଼ିଶାରେ ପ୍ରଫୁଲ୍ଲ ବାବୁ ଏକ ପରିଚିତ ନାମ । ମାଟିର ମଣିଷମାନଙ୍କ ଜୀବନ-ଜୀବିକା ସଂଗ୍ରାମରେ ଶ୍ରୀ ସାମନ୍ତରା ଜଣେ ସାଲିସବିହୀନ ସାଥୀ । ଲାଭଖୋର କମ୍ପାନୀମାନଙ୍କୁ ଅଧିକ ସମୃଦ୍ଧ କରିବା ପାଇଁ ସରକାରମାନଙ୍କର ପ୍ରୋତ୍ସାହନରେ ଯେଉଁ ରାଜ୍ୟବ୍ୟାପୀ ଚାଷଜମି ଦଖଲ, ବିସ୍ଥାପନ ଓ ଜୀବିକାରୁ ଉଦ୍‌ବାସ୍ତୁ କରିବାପାଇଁ ବ୍ୟାପକ ଅଭିଯାନ ଚାଲିଛି, ରାଜ୍ୟର ସାଧାରଣ ମଣିଷ ତାର ପ୍ରତିବାଦ/ପ୍ରତିରୋଧ କରି ଆସିଛନ୍ତି । ଏସବୁ ପ୍ରତିବାଦ ସ୍ୱରର ପ୍ରତିଧ୍ୱନି ଶୁଣିବାକୁ ମିଳେ ପ୍ରଫୁଲ୍ଲବାବୁଙ୍କ ସ୍ୱରରେ ଏବଂ ତାଙ୍କ ଲେଖନୀରେ । ଯେଉଁଠୁ ବି ଡାକରା ଆସୁ କୌଣସି ପରିସ୍ଥିତିକୁ ଭ୍ରୁକ୍ଷେପ ନକରି ସେ ମାଡ଼ି ଚାଲନ୍ତି ଅନ୍ୟାୟର ପ୍ରତିବାଦ କରିବା ପାଇଁ । କେହି ସାଙ୍ଗରେ ଆସିବା, ନ ଆସିବା, ତାଙ୍କ ପାଇଁ କିଛି ବି ଫରକ ପଡ଼େନି । କେହି ତାଙ୍କୁ ତାଗିଦ କରିବା, ଭୟଭୀତ କରାଇବା, ସମାଲୋଚନା କରିବା ବା ଗାଳି ଦେବା ଅଥବା ଟିଭି କ୍ୟାମେରା ଆଗରେ ଗୁଳିକରି ମାରିଦେବା ପାଇଁ ଚିତ୍କାର କରିବା ପ୍ରଫୁଲ୍ଲ ବାବୁଙ୍କ ଉପରେ କିଛି ବି ପ୍ରଭାବ ପକାଏ ନାହିଁ । ନିଜର ସ୍ୱାସ୍ଥ୍ୟ ଅବସ୍ଥା ଯଦି କେବେ ଆକସ୍ମିକ ଭାବେ ଖରାପ ହୋଇଛି, ସେ ଡାକ୍ତରଙ୍କ ଚାପରେ କିଛିଦିନ ନୀରବ ରହିଛନ୍ତି, କିନ୍ତୁ ତାପରେ ପୁଣି ସକ୍ରିୟ ହୋଇଛନ୍ତି ଏବଂ କବିତା ମାଧ୍ୟମରେ ଏହି ସମୟର ଅନୁଭୂତି ଓ ଅନୁଭବକୁ ପରିପ୍ରକାଶ କରି ନିଜକୁ ଜଣେ ସୁସ୍ଥ, ସ୍ୱାଭାବିକ ଓ ସକ୍ରିୟ କର୍ମୀ ହିସାବରେ ପୁଣିଥରେ ଜନସାଧାରଣଙ୍କ ଭିତରକୁ ଆସିଯାଇଛନ୍ତି । ଝାରସୁଗୁଡ଼ା ଓ ଲାଞ୍ଜିଗଡ଼ ଗସ୍ତବେଳେ ବେଦାନ୍ତ କମ୍ପାନୀର ଗୁଣ୍ଡାମାନେ ତାଙ୍କୁ ମାରିଦେବାପାଇଁ ମଧ୍ୟ ଉଦ୍ୟମ କରିଥିଲେ। ବେଦାନ୍ତର କ୍ରୋଧ 'ପ୍ରଫୁଲ୍ଲ ବାବୁଙ୍କ ପିଟିସନ୍' ଯୋଗୁଁ। ଆଜି ସେମାନେ ପଇସାକୁ ପାଣି ଭଳି ଖର୍ଚ୍ଚ କରି, ଶାସକଦଳକୁ ନିଜ ପକେଟରେ ରଖି ଏବଂ କଂଗ୍ରେସର କିଛି ଟାଣୁଆନେତାଙ୍କୁ ହାତବାରିସୀ କରିବାପରେ ମଧ୍ୟ ନିଜକୁ ଅସହାୟ

ମନେକରୁଛନ୍ତି । ପ୍ରଫୁଲ୍ଲବାବୁଙ୍କ ପିଟିସନ୍ ଏବଂ ସଂଘର୍ଷରତ ମଣିଷଙ୍କ ସହ ତାଙ୍କ ସମ୍ପର୍କ ଆଜି ବେଦାନ୍ତ ଭଳି କମ୍ପାନୀମାନଙ୍କ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଛି । ଏକ ସମାଜବାଦୀ ଓ ଗାନ୍ଧିବାଦୀ ପୃଷ୍ଠଭୂମିରୁ ନିଜର ରାଜନୈତିକ ଜୀବନ ଆରମ୍ଭ କରିଥିଲେ ବି ବେଳେ ବେଳେ ତାଙ୍କୁ ମାଓବାଦୀ ସମର୍ଥକ ବୋଲି କହି ତାଙ୍କ ଉପରେ କାର୍ଯ୍ୟାନୁଷ୍ଠାନ ପାଇଁ କ୍ଷେତ୍ର ପ୍ରସ୍ତୁତ ମଧ୍ୟ କରାଯାଇଛି । ସତ କଥାଟି ହେଲା ସେ ଜଣେ ଜନବାଦୀ ଏବଂ ତାଙ୍କର ବିଶ୍ୱାସ ଯେ, କୌଣସି ରାଜନୈତିକ ଆଦର୍ଶବାଦ ଜନତାଙ୍କ ଉର୍ଦ୍ଧ୍ୱରେ ପ୍ରତିଷ୍ଠିତ ନୁହଁ । ସେହି ଦୃଷ୍ଟିରୁ ପ୍ରଫୁଲ୍ଲ ବାବୁଙ୍କ କବିତା ସଙ୍କଳନ 'ଜବାବଦିଅ' କୌଣସି ପ୍ରେମ ବା ରୋମାଞ୍ଚିତ କବିତା ନୁହେଁ । ଏହିସବୁ କବିତା କଳ୍ପନା ବା ବିଳାସର କବିତା ନୁହେଁ । କବିତାଗୁଡ଼ିକୁ ଧ୍ୟାନର ସହିତ ପଢ଼ିଲେ ଅନେକ ପ୍ରତିବାଦ ଓ ପ୍ରତିରୋଧର ପ୍ରତିଧ୍ୱନି ଶୁଣିବାକୁ ମିଳିବ । ସ୍ପନ୍ଦନହୀନ ମଧ୍ୟବିତ୍ତ ଶ୍ରେଣୀର ମନକୁ କବିତାଗୁଡ଼ିକ କେମିତି ଛୁଇଁବ ବା ଛୁଇଁପାରିବ କି ନାହିଁ ଆମେ ଜାଣିନାହୁଁ, କିନ୍ତୁ ସାଧାରଣ ମଣିଷକୁ ଭଲପାଉଥିବା ମଣିଷମାନେ କବିତାଗୁଡ଼ିକରେ ସେମାନଙ୍କ କଥା ଓ କାହାଣୀ ଓ ସେସବୁକୁ ନେଇ ପ୍ରଫୁଲ୍ଲ ବାବୁଙ୍କ ଭାବନାର ପ୍ରତିଛବି ପାଇବେ । ସେ ଭାବନା ସ୍ୱଚ୍ଛ, ନିର୍ମଳ ଓ ସମ୍ବେଦନଶୀଳ ।

ପ୍ରବଳ ଆଶାବାଦୀ ପ୍ରଫୁଲ୍ଲବାବୁ ସବୁ ବିପର୍ଯ୍ୟୟ ଓ ବିଭୀଷିକାକୁ ନିକଟରୁ ଦେଖିଥିଲେ ବି ଏବଂ ତାର ପ୍ରତିବାଦ ପ୍ରକ୍ରିୟାରେ ନିଜକୁ ସାମିଲ କରାଇଥିଲେ ବି, ସେ ଆଶା ରଖିଛନ୍ତି ଯେ ନ୍ୟାୟ, ସ୍ୱାଭିମାନ, ଜୀବନ ଓ ଜୀବିକା ଆସିବ ସଫଳତା ନେଇ । ବର୍ବରତାର କବର ଉପରେ ଦିନ ଗଢ଼ିଉଠିବ ନୂଆ ଏକ ମଣିଷ ସଭ୍ୟତା । ହୁଏତ ସେଠି କେହି କାହାର ଜୀବନ ଓ ଜୀବିକାର ଅଧିକାର ଛଡ଼ାଇ ନେବେ ନାହିଁ ନିଜେ ସୁଖ ଓ ସମ୍ଭୋଗରେ ରହିବାର ନିଶାରେ । ଅସଲ ଶାନ୍ତି ହିଁ ସେତେବେଳେ ଫେରି ଆସିବ । 'ଜବାବଦିଅ' ଭିତରୁ ପାଠକ ସମୁଦାୟ ମୁଠାଏ ଆଶା ଯଦି ସଂଗ୍ରହ କରିପାରିବେ ଏବଂ ସେହି ଆଶାକୁ ନିଷ୍ଠାର ସହିତ ଅନ୍ୟମାନଙ୍କ ଭିତରେ ବିତରଣ କରିପାରିବେ, ତେବେ କବିଙ୍କର ଶ୍ରମ ସାର୍ଥକ ହେବ ।

**ସୁଧୀର ପଟ୍ଟନାୟକ**
ସମ୍ପାଦକ ଓ ପ୍ରକାଶକ 'ସମଦୃଷ୍ଟି'

# ଜବାବ ଦିଅ

# ବିକାଶ ନାମରେ ବିନାଶ

# କାହିଁକି... କାହିଁକି... ?

ମାଟି ଆମ ମାଆ
ବଣ ପାହାଡ଼ର କୋଳେ
ବାପ ଅଜାଙ୍କ ଅଜା ବେଳୁ
ଅରଦଳି କରୁ ଆମେ
ନଦୀ ଝରଣାର ସ୍ରୋତର କାହାଣୀ
ପିତୃପୁରୁଷଙ୍କ ରକ୍ତର ଶ୍ରାବଣୀ
ସୁସ୍ଥ, ଶୀତଳ ପବନ
ଆମ ସମସ୍ତଙ୍କ ଜୀବନ ଧମନୀ
ବୃକ୍ଷଲତା ସବୁଜ ବନାନୀ
ପଶୁ-ପକ୍ଷୀ ସଭିଙ୍କ ମେଳିରେ
ତା କୋଳେ ଆମେ ବଢ଼ିଛୁ ।
ଆମ ପିଲାମାନେ ଏଠି
ମାଆର ସ୍ତନ୍ୟ ପାନ କରି
ମାଟି ମା'ର ସ୍ନେହ ଆସରରେ
ତା' ଛାତି ଉପରେ ଏବେ ଆମ ପିଲାମାନେ
ନାଚୁଛନ୍ତି, କୁଦି ପଡୁଛନ୍ତି
ମାଟିର ପୋକହୋଇ, ପାଣିରେ ମାଛହୋଇ
ଗଛର ଛାଇ ତଳେ ଖେଳି ଖେଳି
ଶୈଶବର ସୀମାପାର ହେଲାପରେ

ଆହାର ସଂଗ୍ରହରେ ଯାଆନ୍ତି ହଜି ଡ଼ଙ୍ଗର ଭିତରେ
ଜୀବନ-ଜୀବିକାର ଆଧାର ସଂଧାନେ
ପ୍ରକୃତିର ସଂଭାର ଆମ ଗନ୍ତାଘର
ଜଙ୍ଗଲ ରାଇଜର କୋଣେ କୋଣେ
ମାଟି ମମତାର ଭକ୍ତି ଅର୍ଘ୍ୟରେ
କରନ୍ତି ପ୍ରକୃତିର ଆରାଧନା
ଅମୃତ ସନ୍ତାନମାନେ ।
ତୁମଠୁ ଆମେ କିଛି ପାଇନଥିଲେ ବି
ଆମେ ଜାଣିଛୁ ବଞ୍ଚିବାର କଳା
ପିଲାଙ୍କୁ ଶିଖାଇଛୁ ଜଙ୍ଗଲରେ ରହି
ହାତୀ-ବାଘ ସହ କିପରି କରିବାକୁ ମେଳା
ଆମ ଗାଁରେ ଆମେ ଅଛୁ
ତୁମେ କିମ୍ବା ତୁମ ଦରମାଖିଆ ବଡ଼ ବାବୁମାନେ
ଆମ ଗାଁ ଦାଣ୍ଡେ ପହଣ୍ଡ ପକାଇବାକୁ
ଆଗରୁ କେବେ ବି କରି ନଥିଲେ ତ ମନ
ଆସିଛ କାହିଁକି ଏବେ ଧରି ପଲଟନ ?

କୁହ ବାବୁ, କାହାପାଇଁ
କିମ୍ବା କାହାର ଅଭିଯୋଗ ନେଇ
ଆସିଛ ପରୱାନ ଧରି ?
ଆମେତ କାହାର୍ କରିନାହୁଁ ଚୋରୀ
କିମ୍ବା କାହାକୁ ଭଣ୍ଡେଇ ଠକେଇ
କାହାକୁ ଲୁଟିବା
ଆମ ପରଂପରା ଅବା ଚରିତ୍ରରେ ନାହିଁ

କହ ! ଆସିଛ କାହିଁକି
କାହା ଇଂଗିତରେ କିମ୍ବା କାହା ଆଦେଶରେ ?
ଆମେ ତ କେବେ ପର ସଂପତ୍ତି ଉପରେ ଆଖି ପକାଇନୁ
କାହାରି ମୁନାଫାରେ ଭାଗିଦାରୀ ନାହୁଁ
କାହାରି ଦୁଃଖର କାରଣ ବି ନୋହୁଁ
ଆମ ପାଇଁ ବହୁତ କରିଛ, କରିଛ
ବୋଲି ଦେଉଥିବା ତୁମ ହିସାବର
ଆମେ କେବେ ହିତାଧିକାରୀ ହୋଇପାରି ନାହୁଁ,
ଏବେ ତମ ଜଗତିକରଣ
ବଜାରୀ ଶିକ୍ଷା-ସ୍ୱାସ୍ଥ୍ୟ ବେପାରରେ
ଆମେ ହେଲୁଣି ଲହୁ ଲୁହାଣ
ଛଡ଼ାଇ ନେଇଛ ଆମରି ହକ
ଜନହିତେ ଥିବା ବ୍ୟବସ୍ଥାଟିକୁ କରିଦେଇ ପଙ୍ଗୁ
ଏବେ କହୁଛ ଘରୋଇକରଣ, ଶିଳ୍ପାୟନ
ସବୁକିଛି ଆମରି ସେବାରେ
ତଥାପି ନାହିଁ ଆମର କାଣିଚାଏ ଭାଗ
କିଂତୁ ପାଲଟିଛି ସେବା
ପଣ୍ୟଦ୍ରବ୍ୟ ବେପାରୀ ହାତରେ ।
ବଜାରରେ ମୂଲଚାଲ କରିବାକୁ
ଆଣିଛ ନା ଦରିଆପାରିରୁ ସୌଦାଗରଙ୍କୁ ?
ଫିରିଙ୍ଗି ଶାସନର ବିଦାୟକୁ
ପୁରିଲାଣି ତିନିକୋଡ଼ି ଚାରିଟି ବରଷ
ତଥାପି ସାମର୍ଥ୍ୟ ନାହିଁ
କହିବାକୁ ଆମେ ସ୍ୱାଧୀନ ବୋଲି

ହଜିଯାଉଛି ଭବିଷ୍ୟତ ସ୍ୱପ୍ନ
ତୁଟିଯାଉଛି ଆତ୍ମବିଶ୍ୱାସ ।
ଏବେ ପୁଣି ପରାଧୀନ କରିବାକୁ
ଆସିଛ ନେଇ ନବରୂପଧାରୀ
ଇଷ୍ଟଇଣ୍ଡିଆ କଂପାନୀମାନଙ୍କୁ ।
ଆମ ବଣକୁ ଲୁଟିଲ, ପାଣିକୁ ଶୋଷିଲ
ପୁଣି କ୍ଷେତ ଅକତିଆର କରିବାକୁ
ପ୍ରୟୋଗ କରୁଛ ବାହୁବଳ, କଳ
ପୋଲିସର ଅମାନୁଷିକ ଦମନ ଗରଳ ।
ଛଡ଼ାଇ ନେଉଛ ଆମ ଭିଟା ମାଟି
ପାଇଛୁ ଯାହାକୁ ଆମେ, ଆମ ପୂର୍ବଜଙ୍କ ଠାରୁ
ପ୍ରକୃତିର ଭେଟି ।

ଏବେ ଆସିଛ ଫୌଜ ନେଇ
ଆମକୁ ବାନ୍ଧିନେବା ପାଇଁ ।
କି ଦୋଷ କରିଚୁ ଆମେ
ଆଗରୁ କେବେ ବି ଫୌଜଦାରୀ ମକଦମା
ଆମ ଗାଁକୁ ଲାଗିନାହିଁ ।
ଏବେ ତୁମେ ଆସିଛ
ଆମକୁ ବୁଝାଇବାକୁ ବିକାଶର ଘୁଣଖିଆ ପାଞ୍ଜିଧରି
ଗାଁ ମାଟିର ଦର କଷିବାକୁ
କଂପାନୀ ସାହୁକାରଙ୍କ ବୋଲକରା ହୋଇ
ବସ୍ତା ବସ୍ତା ସପନ ଆଣିଛ
ଆମ ଗାଁ ଭିଟାମାଟିରୁ ଉଡ଼ାଇନେଇ

ସ୍ୱପ୍ନପୁରୀରେ ପହଞ୍ଚାଇବାକୁ
ବିଜ୍ଞାପନରେ ପ୍ରଚାର କରୁଛ
ମିଛ ମିଛ ଗପ କୁହାଉଛ-
ନୁଆଁ ନୁଆଁ ଘିଅ ମହୁର ସଂସାରେ
ଆମ ଘର ହୋଇଯିବ ତିନିତାଲା
ବ୍ୟାଙ୍କ ଖାତାରେ ଜମା ହେଉଥିବ ଧନ
ଆଉ କେହି ଅଭାବରେ ରହିବେନି
ଆମ ପିଲାମାନେ
ପାଲଟିବେ ବାବୁ ବାବୁଆଣି
ଚାରିଆଡ଼େ ଶୁଭୁଥିବ ପ୍ରଗତିର ଧ୍ୱନି ।
କିନ୍ତୁ ଆମ ଆଖି ଦେଖୁଛି
ଆମ ପଡ଼ିଶା ଗାଁ ଯାଇଛି ଉଜୁଡ଼ି
ହିରାକୁଦ, ମାଛକୁଣ୍ଡ, ଅପରକୋଲାବ,
ଇନ୍ଦ୍ରାବତୀ ଜଳରେ ଅନେକ ଜୀବନ-ଜୀବିକା
ଯାଇଅଛି ବୁଡ଼ି
ଡୁବିଥିବା ନିରୀହଙ୍କୁ
ଆହା ! ପଦେ କହିବାକୁ
କେହିତ ଗଲ ନାହିଁ
ଏବେ ଆମ ଘର ସଂସାର ବୁଡ଼ାଇବାକୁ
ଆସିଛ ଧରି ସର୍ବନାଶ ଶିଳ୍ପ ହତିଆର
ଶୁଣି ପାରୁନ ? ସବୁଆଡ଼େ ବିସ୍ଥାପିତଙ୍କ ହାହାକାର !

ହେଲେ ତମେ କହୁଛ ବଡ଼ ବଡ଼ ଶିଳ୍ପ ହେବ
ବିଦେଶୀ ମୁଦ୍ରା ପାଇଁ କରିବ ରପ୍ତାନୀ

ହେବ ଆମଦାନୀ ବିଳାସ ବ୍ୟସନ
ସୁନ୍ଦର ସୁନ୍ଦର ସୌଖୀନ ମଟର ବାହନ
ଶବ୍ଦହୀନ ଦ୍ରୁତ ବେଗପାଇଁ ହେଉଅଛି
ଚଉଡ଼ା ଚଉଡ଼ା ଜାତୀୟ ପଥର ନିର୍ମାଣ
ବିମାନ ବନ୍ଦର ନବୀନ କରଣ
ସହରରୁ ଗରିବୀ ବସ୍ତି ଉଠିଯିବ
ରାଜଧାନୀରେ ବିରାଜିବ କୁବେରଙ୍କ ମେଳ
ଏସବୁ ଆସିଗଲାପରେ
ଟି.ଭି. ପରଦାରେ ରଙ୍ଗିନୀ ବିଜ୍ଞାପନ
ଡ଼ାକୁଥିବ ପ୍ରତିଯୋଗିତାକୁ
କରୋଡ଼ପତି ହେବା ଆସ୍ଫାଳନ
ଯୁବକ ଯୁବତୀ ଧାଡ଼ି ବାନ୍ଧି ଠିଆ ହେଉଥିବେ
ସରଗର ଶଶି ପାଇବାକୁ
ଆକାଶଟାକୁ ଚାହିଁ ରହୁଥିବେ ।

ଆରପାଖେ ପ୍ରତିଦିନ ଶ୍ରମ ବଜାରରେ
ଚାଲିଛି କୋଳାହଳ
ଶସ୍ତାରେ ବିକିହେଲେ ବି
ଜୀବିକା ମିଳେ ନାହିଁ, ମେସିନର ପ୍ରଭୁତ୍ୱ ଆଗରେ
ଶ୍ରମିକକୁ କେହି ପଚାରେ ନାହିଁ
ଏବେ ଆମକୁ ତୁମେ ଭୂମିହୀନ,
ଜୀବିକାହୀନ କରିଦେବା ପରେ
କର୍ମହୀନ ଶ୍ରମିକ ହୋଇଯିବୁ ଆମେ ।

ତାପରେ ...
କାମ ଖାଉଁଟ ଖାଉଁଟୁ
ମାତ୍ର କୋଡ଼ିଏ ଟଙ୍କାର ଦିନକ ଚଳଣି ମିଳି ବି ନପାରେ
ଶୂନରେ ଦିନଟିଏ ଗଡ଼ିଗଲେ
ଭୋକରେ ଆଉଟୁ ପାଉଟୁ ହେଉଥିବୁ
ନିଜର ଅସ୍ତିତ୍ୱ ହଜି ଯାଉଥିଲେ ବି
ଦେଖୁଥିବୁ ଆମ ଦେଶ କେଡ଼େ ମହାନ୍
ଆମେରିକାରୁ ପ୍ରମାଣପତ୍ର ମିଳୁଛି
କେତେ ବଡ଼ ବିଶ୍ୱ–ଶକ୍ତିମାନ !

ଶୁଣ ଶୁଣ ବାବୁମାନେ
ବିକାଶର ଗୀତ ଗାଇ ଗାଇ
ଆମ ଦେଶର ନେତାଗଣ
ବିନାଶକୁ ଥୋପି ସାରିଲେଣି
ଆମ ଭୋଟ ପାଇ କ୍ଷମତାକୁ ଯାଇଥିବା ସରକାରମାନେ
ଆମକୁ ତଡ଼ିବାକୁ ଶିଳ୍ପାୟନ ନାମେ
ପଠାଇଛନ୍ତି ଡମ ହାତେ ଦଳେ ପଲଟନ ।
ଚାଷରୁ, ବାସରୁ,
ଜଳରୁ, ବଣରୁ, ଡ଼ଙ୍ଗରରୁ
ହ୍ରଦରୁ, ସାଗରରୁ, ନଦୀରୁ,
ପରଂପରା ଜୀବିକାରୁ,
ଶେଷରେ ଶ୍ରମରୁ ବିସ୍ଥାପିତମାନେ
କାରଖାନା ଚିମିନିର ଧୂଆଁରେ
ବିଷ ବଳୟରେ ଜୀବନ ଜର୍ଜରିତ

ସରକାରୀ ପ୍ରତିଶ୍ରୁତିରେ ପ୍ରତାରିତ
ସର୍ବହରା-ବଞ୍ଚିତ ମଣିଷମାନେ
ଖୋଜୁଛନ୍ତି ହରାଇ ଥିବା
ମମତା ମାଟି ମଟାଳର
'ତୁମ ମୁନାଫାପାଇଁ ଆମେ ସଉଦା ହେବୁ ନାହିଁ ବୋଲି'
ଶହୀଦମାନଙ୍କ ରକ୍ତରେ
ରଂଜିତ ହୋଇଛି ବୀରଭୂମି କଳିଙ୍ଗନଗର ।
ବାରଂବାର କହିଲୁ, ଗୁହାରି କଲୁ, ଦାବିପତ୍ର ଦେଲୁ
ଶୋଭାଯାତ୍ରା, ପ୍ରତିବାଦ-ସତ୍ୟାଗ୍ରହ କଲୁ,
ପୋଲିସ ଗୁଳିର ସମ୍ମୁଖୀନ ହେଲୁ
ଗୋଟାଏ ପରେ ଗୋଟାଏ ଜୀବନ ଦେଲୁ
ତଥାପି ଗଣତନ୍ତ୍ରର ପ୍ରହରୀମାନେ
ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ,ବିଧାୟକ
ଶାସକ ବା ପ୍ରଶାସକ
କିଂବା ବିଚାରପତିମାନେ, କେହି ବି
ଆମ ଅଧିକାରତକ ରକ୍ଷା କରିବାକୁ
ପଢ଼ିଲେନାହିଁ ଲେଖାହୋଇଥିବା ସଂବିଧାନଟାକୁ ।
କଂପାନୀ ବାହାଦୂରଙ୍କ ସେବାରେ
ସରକାରୀ ଆତଙ୍କବାଦର ତାଣ୍ଡବ ଲୀଳାରେ
ଗଣତନ୍ତ୍ର ଲଙ୍ଗଳା ହୋଇଛି
ଗୁଳିତନ୍ତ୍ରର ଦୁଃଶାସନ ହାତେ
ଘୋଷଣା ହୋଇଛି ଯୁଦ୍ଧ
ସ୍ୱାଧୀନ ଦେଶର ଜନତା ବିରୁଦ୍ଧେ ।

ଆମେ ବା କରିବୁ କ'ଣ ?
ଆତ୍ମରକ୍ଷା ପାଇଁ
ପାରଂପାରିକ ଅସ୍ତ୍ରଶସ୍ତ୍ର ଧରିଥାଉ
ତଥାପି କେବେ ନେଇ ନାହୁଁ ଜୀବନ ତୁମରି କାହାର
ଆମ ଧନୁରୁ ଯାଇନାହିଁ ତୀର
ଦେବାକୁ ତୁମ ଲାଠି ଗୁଳିର ଉତ୍ତର
ଚାଲିଛୁ ଆମେ ସଂଗ୍ରାମର ପଥେ
ଥିବାଯାଏ ଶେଷ ରକ୍ତବିନ୍ଦୁ ।
ଯଦି ଶିଳ୍ପହେବ ଆମ ଶବ ଉପରେ
କହିବକି କାହାର ସ୍ୱାର୍ଥରେ ?

ତୁମେ ତ ଆସିଛ କାହା ନିର୍ଦ୍ଦେଶରେ,
ଜାଣିଛକି ? ଆମ ଭାତହାଣ୍ଡି ଭାଙ୍ଗି ଦେଲାପରେ
କାହାର ଇମାରତ ହେବ ପଚାଶ ମହଲା
ଯୁଦ୍ଧ ପାଇଁ ଅସ୍ତ୍ର ଯିବ ବିଶ୍ୱ ବଜାରକୁ
ଇସ୍ପାତ- ଆଲୁମିନିୟମ ସୌଦା ହେବାପରେ ।
ଯେଉଁମାନେ ଯୁଦ୍ଧ ଓ ହତ୍ୟାର କ୍ଷେତ୍ରକୁ
ମଣିଥାନ୍ତି ମୁନାଫାର ଏକ୍ସୁଡ଼ିଶାଳ
ସେହିମାନେ କ୍ଷୁଧାର ସୃଷ୍ଟିକର୍ତ୍ତା ରୂପେ
ଭିଆଇଥାନ୍ତି ଯୁଦ୍ଧପାଇଁ ଅଶାନ୍ତର ଖେଳନ୍ତ
ହାଜର ହୁଅନ୍ତି ପୁଣି
ପୁଂଜିର ମୁଣିଧରି
ବେକାରୀଙ୍କ ତ୍ରାଣକର୍ତ୍ତା ବେଶେ

ଟାଟା–ପୋସ୍କୋ–ମିତଲ–ଅମ୍ବାନୀ–ଅନୀଲଅଗ୍ରୱାଲାମାନେ
ବିକାଶର ଷ୍ଟାମ୍ପ ଧରି ଆସିଛନ୍ତି
ଲୁଟିବାକୁ ଆମ ରତ୍ନ ଖଣି
କୃଷିର ହତ୍ୟା ପାଇଁ
ଶିଳ୍ପନାମେ କଂସେଇଖାନା ତିଆରି ଚାଲିଛି
ଚାଷୀ ହେବ କୁଲି
ଜଙ୍ଗଲକୁ ନିପାତ କଲାପରେ
ବନବାସୀଙ୍କ ଅଧିକାର ପଡ଼ିଯିବ ବଳି ।

ଚାଲିଛି ବିକାଶର ମନ୍ତ୍ର ଉଚ୍ଚାରଣ
କୋଟି କୋଟି ଟଙ୍କାର ମିଥ୍ୟା ବିଜ୍ଞାପନେ
ବେଦାନ୍ତ–ବିରଳାଙ୍କ ସହ ଅନେକ ବିଦେଶୀ
ଅପେକ୍ଷାରେ ବସିଛନ୍ତି
ସିଂହାସନେ ବସିଥିବା ରଜାମନ୍ତ୍ରୀଙ୍କ ଠାରୁ
କିମିଆ ମନ୍ତ୍ରରେ ଆଦେଶ ଆଣିବାକୁ
ନିୟମଗିରି–ବାଫିଲିମାଳ–କୋଡ଼ିଙ୍ଗା
ଦେଓମାଳି–ଗଂଧମାର୍ଦ୍ଧନକୁ ଦେବାପାଇଁ ଫାଶି ।
ତାପରେ "ଯୁଦ୍ଧର ହୀରା" ବକ୍‌ସାଇଟରୁ
ଚକ୍ ଚକ୍ ଆଲୁମିନୟମ ଜନ୍ମ ନେବାପରେ
ଆଧୁନିକ ଯୁଦ୍ଧାସ୍ତ୍ର ଓ ବିଳାସୀ ବ୍ୟସନ
ଚମକାଇବ ବିଶ୍ୱବଜାରରେ ।
ସବୁଜ ବନାନୀ ହଜିଗଲାପରେ
ହେବ ଅପମୃତ୍ୟୁ ତା ଗର୍ଭରୁ ଜାତ ନଦୀ–ଝରଣାର
ପ୍ରାଣହୀନ ଶୂନ୍ୟତା ମଧ୍ୟରେ

କାକ ପିକ ଇତର ପ୍ରାଣୀଙ୍କ ଆବେଗ ସଂଗୀତ
ସରି ଯାଉଥିବ ସେମାନଙ୍କ ଶେଷ ନିଃଶ୍ୱାସରେ
ଡଙ୍ଗରିଆ, ଝରଣିଆ, କୁଟିଆ ପରଜା,
ପାଉଡିଭୂୟାଁ ଥିବେ କେବଳ ବିକାଶର ବିଜ୍ଞାପନରେ
ଅବା କଂପାନୀ ମ୍ୟୁଜିୟମରେ
ନତୁବା ଦେଖା ହେଉଥିବେ
ପଣ୍ୟଦ୍ରବ୍ୟ ରୂପେ ସରକାରୀ ମେଳା ଉତ୍ସବରେ ।
ବିକାଶର ଚକତଳେ-
ମାଟିର ମଣିଷମାନେ ହେଉଥିବେ ପେଶି
କଂପାନୀ ଦଲାଲ ରାଜନେତାମାନେ
ନିଜ ଆତ୍ମୀୟମାନଙ୍କ ଥଇଥାନ ପରେ
ଆମ ପାଇଁ ନଥିବ ଆଉ କିଛି ବାକି ।

ଆମେ ପଚାରୁଛୁ ତୁମ ଜରିଆରେ
ସତ କହିବେ କି ସବୁ ଦଳପତିମାନେ
ବଡ଼ଶିଳ୍ପ, ବଡ଼ପୁଞ୍ଜିରେ କାହିଁକି ବିଭୋର ?
ଚାଷକୁ ମାରୁଛ, ବାସକୁ ମାରୁଛ
ମାରୁଛ ଗାଁର ବୃତ୍ତିକୁ
ଚାଷୀ ମରିଗଲେ
ଜମି ଚାଲିଗଲେ
ଭୋକିଲା ପେଟକୁ ମିଳିବ ଆହାର ?
ସ୍ୱାଧୀନତାର ରକ୍ଷାକବଚ ଖାଦ୍ୟ ସୁରକ୍ଷାକୁ
କରିବାକୁ ଧରାଶାୟୀ
ଚକ୍ରାନ୍ତ କରୁଛି ୱାସିଂଟନ୍

ତୁମେ ସଭିଏଁ କାହିଁକି
ଆମେରିକା ପାଦତଳେ କର ଆତ୍ମସମର୍ପଣ ?
ସଂବିଧାନର ଶପଥ ନେଇଛ
ଆମ ସାର୍ବଭୌମ-ସ୍ୱାଧିନତାର ରକ୍ଷକ ହୋଇଛ
ଗାଁରୁ ଭୁବନେଶ୍ୱର ଦିଲ୍ଲୀ ଯାଏଁ କରୁଛ ରାଜତ୍ୱ
ଆମ ଭୋଟ ପାଇଁ ଗଣତନ୍ତ୍ରର ତର୍ଜମା କରୁଛ
ଭୋଟ ପାଇଗଲାପରେ କୁଆଡ଼େ ଗଲା
ଆମ ମତକୁ ସମ୍ମାନ ଦେବାର ତୁମର ଦାୟିତ୍ୱ ?
ଅନୀତି-ଅନ୍ୟାୟ, ଆଗଣତାନ୍ତ୍ରିକ ନୀତି ବିରୁଦ୍ଧରେ
ଗଣପ୍ରତିବାଦକୁ ଅସହ୍ୟ କାହିଁକି
କ୍ଷମତା ନିଶାରେ ହାଁ ଜୀ ବୋଲୁଛ
ବିରୋଧୀ ଦଳରେ ରହି
ନିରବତା ବ୍ରତ ପାଳି
କଂପାନୀ ଦେବତାଙ୍କ ଭକ୍ତ ପାଲଟୁଛ
କହ କାହିଁକି ଏ ପ୍ରତାରଣା ? ?
କି ପାପ କଲୁ ଆମେ
ଆମ ଘର ବାଡ଼ି ଆମ ଜୀବନ ଜୀବିକା
ଛଡ଼ାଇନେବାକୁ
କାହିଁକି ତୁମ ରାଜନୀତି ହୁଏ ନିତି ବିକା କିଣା ?

ବଡ଼ ବଡ଼ ବାବୁମାନଙ୍କ ଦୁଆରେ
ଲେଖା ଅଛି 'ବିନା ଅନୁମତିରେ ପ୍ରବେଶ ନିଷେଧ'
କିଂତୁ ଆମକୁ ନ ପଚାରି
ଆମ ସମ୍ମତି ନଥାଇ ଆସିଛ ବନ୍ଧୁକ ଧରି

ଆମ ଗାଁ, ଆମ କ୍ଷେତ କରିବାକୁ ବଧ
କି ଦୋଷ କଲୁଆମେ କରି ପ୍ରତିରୋଧ ?
ସ୍ୱାଧୀନ ଦେଶର ଆମେ ସ୍ୱାଧୀନ ସନ୍ତାନ
ଭାବୁଛନ୍ତି ପରଦେଶୀ ହୁକୁମରେ
ଚାଲୁଥିବା ଶାସନରେ
ତୁମେ ରାଜା
ଆଉ ଆମେ ପ୍ରଜା ପରାଧୀନ ?
ଇତିହାସ ପଢ଼ାଇଛି
ଇଷ୍ଟଇଣ୍ଡିଆ କଂପାନୀ ଆଣିଥିଲା ଫିରିଙ୍ଗିଶାସନ
ଆମ ଅନ୍ନଦାତାଙ୍କୁ କରିଲା ଭିକାରୀ
ବୁଣାକାରର ତନ୍ତକୁ ମାରି
ଗଢ଼ିଥିଲା ମଞ୍ଚେଷ୍ଟର ମିଲ୍,
ପୁଣି ଏବେ ତୁମେ ସବୁ
କଂପାନୀ ବାହାଦୁର ହୋଇ
ଆଣୁଛ ପୋସ୍କୋ–ବେଦାନ୍ତ–ମିତ୍ତଲ ଇଣ୍ଡିଆମାନଙ୍କୁ
ସେମାନଙ୍କ ଠାରୁ ଘୁସ୍ ପାଇଛ ବୋଲି
କଂପାନୀ–ସେନା କରିବାକୁ ସମ୍ମତି ଦେଇଛ
ଆମକୁ ମାରୁଛ, ଘର ଦୁଆର ନିଆଁ ଲଗାଉଛ,
ବୁଲ୍ଡୋଜରରେ ଆଶ୍ରୟ ଭାଙ୍ଗୁଛ
ଲୁଟ୍‌ତରାଜ କରି ଆମ ଝିଅ ବୋହୂଙ୍କ ଚୁଟିଧରି
ଜେଲ ପଠାଉଛ
ସତକୁ ମିଛକରି
ଗୁଳିବିଦ୍ଧ ଶହୀଦଙ୍କ ଶବକୁ
ଗାଏବ କରୁଛ, ତଥାପି କହୁଛ ନିର୍ଲଜରେ
ତୁମରି ଶାସନେ
ଚାଲିଛି ଶାନ୍ତିପୂର୍ଣ୍ଣ ଶିଳ୍ପାୟନ ।

ତୁମେ ପୁଣି ଆସିଛ ଏବେ ଆମ ଗାଁ ଭାଙ୍ଗିବାକୁ
ଯାଅ ପଚାର ତୁମଜାତି ଭାଇମାନଙ୍କୁ
ଯାଇଛନ୍ତି ଯେଉଁମାନେ ତୁମପରି ପଲଟନଧରି
ନିୟମଗିରି, ଦେଓମାଳି, କାଶୀପୁର ବାଫିଲୀମାଳି
କଳିଙ୍ଗନଗର, ଢ଼ିଙ୍କିଆ ଚାରି ଦେଶକୁ,
ପୁରୀ–କୋଣାର୍କ ବେଳାଭୂମି ଆଡ଼େ
କିମ୍ବା କେନ୍ଦୁଝରର ପାଟଣା–ଟିକରପଡ଼ାକୁ
ସେହି ମାଟି ମା'ର ମା'ଭଉଣୀଙ୍କ ଗୋଟିଏ ପ୍ରଶନ
''ଆମକୁ ତୁମେ କିଛି ଦେଇ ନାହଁ, ନେଲଣି ବହୁତ
ପୁଣି ନେବା ପାଇଁ ଆସୁଛ କାହିଁକି
ବିକାଶ ନାମରେ ବିନାଶ ସହିତ ? ''

ଜଙ୍ଗଲ ମାଫିଆଙ୍କ ପରେ
ଏବେ ଆଣିଛ ଖଣି ମାଫିଆକୁ
କଂପାନୀମାନଙ୍କସହ ଚୁକ୍ତି କରିଆରେ,
ସବୁ ଖାଲି ହୋଇଯିବ
ବାୟୁମଣ୍ଡଳରେ ନିଆଁ ଲାଗିଯିବ
କଉଡ଼ିଟିଏ ରାଜସ୍ୱ ପାଇବାକୁ କୋଟିଏ ସରିବ
ଜଙ୍ଗଲ ସଫାକରି ଚାଲିଛନ୍ତି
ଖଣିକୁ କରୁଛନ୍ତି ଖୋଳ
ଛାଡ଼ିଯାଉଛନ୍ତି ପ୍ରଦୂଷଣ ଯେତେ
ଆମକୁ କରିଛି କାଙ୍ଗାଳ
ତୁମକୁ ଆମେ ମାଗୁଛୁ ହିସାବ
ନେଇଛ କେତେ, ଦେଇଛ କେତେ ।

ଉତ୍ତର ଦେବାକୁ ଆସିଗଲାବେଳ
ତୁମପାଇଁ ବଡ଼ ଦେଉଳ ଯେତିକି ମହିମା
ତାଠାରୁ ଅଧିକ ଡ଼ଙ୍ଗୁରିଆ ପାଇଁ
ନିୟମଗିରିର ପ୍ରକୃତି ଦେବତା,
ନିୟମରାଜାଙ୍କୁ ପୂଜା ଅର୍ଚ୍ଚନା
ତା କୋଳରୁ ଜାତ ଚିରସ୍ରୋତା
ନିର୍ଝର ନଦୀ ଓ ଝରଣା
ବହୁଥାଏ ଜଳଧାରେ ପିତୃପୁରୁଷଙ୍କ ପ୍ରତି ରକ୍ତ କଣା
କୁଳୁ କୁଳୁ ଶବ୍ଦ ଭିତରୁ
ଶୁଭୁଛି ଆବେଗର ସ୍ୱର
ପ୍ରକୃତିର ଅବଦାନ ଜଳ, ଜମି, ସବୁଜ ଜଙ୍ଗଲ
କିଣାବିକା କରିବାକୁ ଆମ ତୁମ
କାହାପାଖେ ନାହିଁ ଅଧିକାର ।

ଇତିହାସ ପୃଷ୍ଠା ଗାଉଛି
ସିଆଟଲ ଲୋହିତ ଭାରତୀୟ ମୁଖିଆଙ୍କ ଗୀତ
ସେ ତ ଥିଲେ ମହୀୟସୀ ନାରୀ
ଗୋରା ବେପାରୀଙ୍କୁ ଜବାବରେ କରିଥିଲେ ପ୍ରଶ୍ନ
"ଏ ମାଟି, ପାଣି, ପବନ ସବୁଥିରେ
ଆମକୁ ମଣିଷ କରିଥିବା
ପିତୃ ପୁରୁଷମାନଙ୍କ ପ୍ରତିଟି ନିଶ୍ୱାସ
ପ୍ରତିଦିନ କରୁ ଅନୁଭବ
ଭବିଷ୍ୟତକୁ ସୁରକ୍ଷା ଦେଉଥିବା
ପ୍ରକୃତିର ଦାନ ମା'ମାଟି ଓ ତା ପାଖରେ

ଥିବା ଶୀତଳ ନଦୀ ଝରଣା, ମୁକ୍ତ ଆକାଶକୁ
ବିକିବାକୁ ଆମେ କିଏ ?
କିଣିବାକୁ ତୁମେ କିଏ ?''
ପୁଣି ଦେଢ଼'ଶ ବର୍ଷର ସମୟ ଚକରେ
ରକ୍ତରଂଜିତ କାଶୀପୁର ମାଟିର
ତିନି ଶହୀଦଙ୍କ ସ୍ମୃତିରେ
ମୁକ୍ତା ଝୋଡିଆଙ୍କ ପ୍ରଶ୍ନ ଥିଲା
ହେ ବାବୁ, ମନ୍ତ୍ରୀ, କଲକ୍ଟର !
ଦେଶର ପାଠୁଆମାନେ କହିବ କି
ତୁମରି ଜ୍ଞାନ-ବିଜ୍ଞାନରୁ ଜାତ ହୋଇଛିକି
କିମ୍ବା କାଗଜ କଲମମୁନରୁ ନେଇଛିକି ଜନ୍ମ
ପାହାଡ଼ ପର୍ବତ ଓ ଝରଣାର ସ୍ରୋତ ?
ଏ ଜମି ଆମ ପୂର୍ବପୁରୁଷଙ୍କ ଝାଳରେ ତିଆରି
ଆମ ବାପ ଅଜାକାଳୁ
ଏଠି ଆମ ଜୀବନ ଜୀବିକା ଯାଉଅଛି ଚଳି
କାହିଁକି ତୁମ ବିକାଶ ଛୁରିରେ
ଆମେ ପଡ଼ିଯିବୁ ବଳି ?
ଆମ ପେଟରେ ଥିବା ଆଗନ୍ତୁକମାନଙ୍କ
ଭବିଷ୍ୟତ ବି ଏଠି ସୁନିଶ୍ଚିତ
ଏ ସବୁକୁ ଆମଠାରୁ ଛଡ଼ାଇ ନେବାକୁ
ତୁମକୁ ଦେଲା କିଏ ଅଧିକାରତକ ?

ହେ ! ପଲଟନଧାରୀ ରାକ୍ଷସ
କ୍ଷମତାକୁ ହାତେଧରି

ବନ୍ଧୁକ ମୁନଟାକୁ ଆମଆଡ଼େ ମୁହାଁଇଛ ବୋଲି
ତୁମ କାନଟାକୁ ଆମକଥା ଶୁଭୁଛିକି ନାହିଁ ?
ଶୁଣିପାରୁଛ ! ପ୍ରତିବାଦ ସ୍ୱର ଆମ ଅନ୍ତର ଆତ୍ମାର
ବିଦ୍ରୋହ ଡ଼ାକରା ବ୍ୟଥିତ ପ୍ରାଣର ?
କାହିଁକି ଶୁଣିବ !
ଶୁଭିଲେ ବି ବୁଝିବାକୁ ମନ ନାହିଁ
ଦେଇଛ ବିକି ବିବେକକୁ
କଂପାନୀର ପ୍ରଲୋଭନ ପାଖେ
ଆସିଛ ହୃଦୟହୀନ ବାହାଦୂରୀ କମାଣ୍ଡର ହୋଇ ।

ଏ'କି ଷଡ଼ଯନ୍ତ୍ର
ନିୟମଗିରି, ଖଣ୍ଡାଧାର, ସୁକିନ୍ଦା ଉପତ୍ୟକା,
କୋଣାର୍କର ବେଳାଭୂମି
ଭୁଇଁତଳ ମଧୁର ଜଳକୁ, ଫସଲି ଜମିକୁ
ଯନ୍ତ୍ରାୟନ ପେଶିଦେବ
କଂପାନୀ ସାମ୍ରାଜ୍ୟର ପୁଞ୍ଜି ଗଢ଼ିବାକୁ
ବଂଶଧାରା-ନାଗାବଳୀ ନଦୀ, ଅନେକ ଝରଣା
ଅପମୃତ୍ୟୁର ଶିକାର ହେବାପରେ
ତୁମ ବଂଶଧର ଆଗାମୀ ଦିନରେ
ପାଣି-ପବନ ବ୍ୟତିରେକେ ବଞ୍ଚି ପାରିବେତ ?
ମାଟି ଉପର ସଫାକରି ମାରିଲ ସବୁଜ ବନାନୀ
ମାଟି ତଳ ଖୋଳି ସାରି ମରୁ କରିସାରିଲଣି
ଖାଲି କରି ସାରିଛ ରତ୍ନଭଣ୍ଡାର
ମୟୁରଭଂଜ, କେନ୍ଦୁଝର-ସୁନ୍ଦରଗଡ଼ର ।





ମୁଷ୍ଟିମେୟ କେଇଜଣ ସଂକଳ୍ପବଦ୍ଧ ସାଧକ
ଯଦି ସେମାନଙ୍କର ଆଦର୍ଶରେ ଅବିଚଳିତ ବିଶ୍ୱାସ ରଖନ୍ତି,
ତେବେ ସେମାନେ ଇତିହାସର ମୋଡ଼ ବଦଳାଇ ଦେଇ ପାରିବେ ।

-: ମହାତ୍ମା ଗାନ୍ଧୀ

**ନିୟମଗିରି ସୁରକ୍ଷା ସମିତି, ଲାଞ୍ଜିଗଡ଼**

ଏବେ ତାର ବଞ୍ଚିତ ପିଲାମାନେ
ଖୋଜୁଛନ୍ତି ବଞ୍ଚିବାର ବାଟ,
ମାଟି ମଟାଳର ଚିତ୍କାରକୁ
ନକରି ଖାତିରି
ମିତ୍ତଲ-ରେଂଗୁଟା-ଏଲ୍ଏଣ୍ଟି ନାମେ
ଆସିଛନ୍ତି ଭସ୍ମାସୁର ପୁଞ୍ଜାଏ ଖୋଜି ଖୋଜି ବାଟ
କରିବାକୁ ମଣିଷକୁ ହାଟର ସଉଦା
କାହାର ମୂଲ୍ୟ କେତେ
ମୂଲଚାଲ କରିବାକୁ
ରଖିଛନ୍ତି ଭଡ଼ାଟିଆ ଭାଟ
ସଂବାଦପତ୍ର, ଗଣମାଧ୍ୟମ-ପ୍ରଶାସନ
ରାଜନେତା ହୋଇଛନ୍ତି ମେଳି
ଆମ ସଂପଦକୁ ଲୁଟରାଙ୍କ ହାତେ ଟେକି
ବଜାଉଛନ୍ତି ବିକାଶର ଭେରୀ ।

ତମେ ସବୁ ପରଖିଆ ! ଜାଣିନ ?
ଚିରସ୍ରୋତା ବୈତରଣୀ ଏବେ ଶୁଖିଲା ପଡୁଛି
ଜଙ୍ଗଲ ଓ ତା ପାଖେ ଥିବା ଖଣିର ସଂରକ୍ଷଣ
ଏବେ ଜଳପାଇଁ ଏକାନ୍ତ ଜରୁରୀ
ଏକଥା ଜନବାଦୀ ବିଜ୍ଞାନୀମାନଙ୍କ ମୁଖରୁ
ବାରଂବାର ଚେତାବନୀ ଆସୁଥିଲେ ମଧ୍ୟ
ଶାସକ କାନକୁ ଶୁଭୁନାହିଁ କାହିଁ
କାହାକୁ ଖାତିରି ବି ନାହିଁ
କାହିଁକି ଜାଣ ?

ଖଣି ପଇସାରେ ରାଜନୀତି ଚାଲେ
ଯାହାକୁ ଯାହା ଦେଇ ନେଇ
ବାକିତକ ରାଜା ନିଜ ପାଇଁ ରଖେ
ତହିଁରୁ ମୁଠାଏ ବିଞ୍ଚି ଦେଇଗଲେ
ନିର୍ବାଚନ ଖର୍ଚ୍ଚ ନିର୍ବିଘ୍ନରେ ଚାଲେ
ଲଞ୍ଚ୍ (ଲାଞ୍ଚ) ଖାଇବାକୁ ପଡ଼େ ନାହିଁ
ଡ଼ାଇନିଂ ଟେବୁଲ ପକାଇ
ଫାଷ୍ଟ ଫୁଡ଼୍ ଗରମ ଗରମ
ପ୍ୟାକେଟରେ ଆଣି
ଗାଡ଼ି ଘୋଡ଼ାରେ ବସି
ଖାଇବା ଷ୍ଟାଇଲ୍ ବଦଳାଇ ଦେଲେ
ପେଟର କିଛି ଅଭିଯୋଗ ନାହିଁ
ସେଇଥି ପାଇଁ ତ ରଜାଙ୍କ ଧଳା ଫର୍‌ଫର୍
ସାଫ୍ ସୁତରା ଚେହେରାରେ ମଇଳା ଦାଗଟିଏ ନାହିଁ ।
ତୁମେ ଜାଣି ନ ଜାଣିଲାପରି ରହୁଛ
ଆମେ ଜାଣିଛୁ !
ଆମ ଦେଶ ରାଜା କିମିତି ବୋଲଇ
ଦେଶୀକୁ ନାକ ଟେକି ଟେକି
ବିଦେଶୀ ଭାଷାରେ ପ୍ରବଚନ ଦେଇ
ବିଦେଶୀଙ୍କ ହାତେ
ଆମ ଭାଗ୍ୟ ଡ଼ୋରି ଧରାଇ ଦିଅନ୍ତି
ଆମ ପ୍ରତିରୋଧର ଦମନ ପାଇଁ
ଦିଲ୍ଲୀ ଦରବାରେ ଗୁହାରି କରନ୍ତି ।
ରଜାଙ୍କ ରଜା ଦିଲ୍ଲୀ ମହାରଜା

ବିଶ୍ୱବ୍ୟାଙ୍କରୁ ଆସିଛନ୍ତି ବୋଲି
ଆମେରିକା ପାଖେ ଆମ ଦେଶଟାକୁ
ଲିଜ୍ ଦେଇଦେବା ପାଇଁ ଯୋଜନା ଚାଲିଛି
ରାଜା-ମହାରଜା ମିଳିତ ସ୍ୱରରେ
ବିନାଶ କରୁଥିବା ବିକାଶ ଯଜ୍ଞରେ
ମନ୍ତ୍ର ପଢ଼ି ପଢ଼ି
ଆମ ବେଉସା- ଧାନ, ମୁଗ, ମାଣ୍ଡିଆ
କ୍ଷେତକୁ ସ୍ୱାହା କରୁଛନ୍ତି ।

କହିଲ ପାଠୁଆ ବାବୁମାନେ !
ପଲଟନ ଧରି ଆମକୁ ପଚାରୁଛ
''ଶିଳ୍ପକୁ ବିରୋଧ କରୁଛ କାହିଁକି''
ବିକଳ୍ପ ଅଛିକି ବୋଲି ଉତ୍ତର ମାଗୁଛ ।
ଆମେ ତ ଅପାଠୁଆ
ପଚାରୁଛୁ ଦେଇପାରିବ କି
ତୁମ ପାଠୁଆ ମୁଣ୍ଡଟା ଆମ କାମରେ ଆସିବ
ତୁମେ ତ ଦେବାକୁ କଦାପି ପ୍ରସ୍ତୁତ ହେବନି
ତା'ହେଲେ ତୁମ ମୁଣ୍ଡଟାକୁ
ଆମେ କାଟି ଆଣିବାକୁ ହଁ କରିବକି ?
ଯଦି ନାହିଁକର, ବିକଳ୍ପଟିଏ ଦେଇପାରିବକି ?
ବାବୁ ! ତୁମେ ନିଶ୍ଚିତ କହିବ
''ମୋ ମୁଣ୍ଡ ନେବାକୁ କିଏ ତୁମେ ?''
ଏବେ ଆମର ଉତ୍ତର ବି ତୁମ ପାଖରେ
ଆମ-ଜୀବନ-ଜୀବିକା

ଛଡ଼ାଇ ନେବା ଅଧିକାରଟି ତୁମକୁ ଦେଲା କିଏ ?
ତୁମେ ସବୁ ଧଳାହାତୀ କିଏ ?
ଆମ ଚାଷ, ବାସ ଉଜାଡ଼ି ଦେବାକୁ,
ଶିଳ୍ପ ନହେଲେ ନାହିଁ
ଆମ ଜୀବନକୁ କଲବଲ କରିବାକୁ
ସରକାର କାହିଁକି ହାଇଁ ପାଇଁ ?
ବୁଲଡ଼ୋଜର ଧରି ଆସିଛ
ଆମ ଘରଭାଙ୍ଗି ଚାଷକୁ କରିଦେବ ନାଶ
ଧାନ, ଚାଉଳ, ମୁଗ, ବିରି, କାନ୍ଦୁଲ
ହଳଦୀ, ଆଖୁ, ଝୋଟ, ସୁଆଁ, ଷୋରିଷ
ଏ ସବୁର ସମାଧିପରେ
ବଞ୍ଚିପାରିବା କି ତୁମେ ଆମେ ସକଳ ମଣିଷ ?
ଚାଷକୁ ମାରିଲେ
ଶିଳ୍ପ ପାଇଁ ଖାଦ୍ୟ ଆସିବ କେଉଁଠୁ
ବାବୁ ଆମ ପାଇଁ ଥିବା
ଲୁଗାକଳ-ଚଉଦ୍ୱାର ମିଲ୍‌କୁ ଭାଙ୍ଗିଲ
ଥିବା ଚିନିକଳ ଫିମ୍ପି ମାରିଲାଣି
ସୁତାକଳଯାକ ବେକରେ ଦଉଡି ବାନ୍ଧିଲ
ଗାଁ ଗହଳର କୁଟୀର ଶିଳ୍ପକୁ ମାରିଲ
କଂପାନୀ ମାଲିକକୁ କେବେତ ପଚାର ନାହିଁ
କିଆରିରେ ଆଖୁ କାହିଁକି ଶୁଖିଲା ପଡୁଛି
ତେଲକଳ କାହିଁକି ଉଭାନ ହେଉଛି ?
କାହୁଁ ତମେ କେବେ ସରକାରଆଡୁ
ଆସିନାହିଁ ଆମ ଠାରୁ କଞ୍ଚାମାଲ
ଶିଳ୍ପ ପାଇଁ କିଣିବାକୁ

କାହିଁକି ଗାଁର ଉତ୍ପାଦନେ ନାହିଁ ତମ ମନ
ଏସବୁ କ'ଣ ଶିଳ୍ପ ତାଲିକାରୁ ବାଦ ପଡ଼ିଲେଣି
ଏଥିରୁ ବୋଧେ ମିଳୁନାହିଁ ବୋଲି କମିସନ ?
ଏବେ ବଡ଼ କାରଖାନା ପାଇଁ
ତୁମକୁ ପଡ଼ିଛି ଭାଳେଣି
ଆମ ଫସଲ ତିନିଗୁଣା ବଢ଼ାଇବାକୁ
ହିରାକୁଦ, ରେଙ୍ଗାଲି ବନ୍ଧ କେନାଲରୁ ପାଣି
କାହିଁକି ତୁମ ବିକାଶରେ ସ୍ଥାନ ପାଉନାହିଁ ?
ସରକାରକୁ ନିଦ ଲାଗେନାହିଁ
ଚାଷୀ ଆନ୍ଦୋଳନ ଦିନ,
ପାଣି ଦେଇଦେବା ପାଇଁ
ବେଦାନ୍ତ, ଭୁଷଣ, ଇଣ୍ଡଲଠାରୁ
ନେଇଆସିଛନ୍ତି ବୋଲି
ନିର୍ବାଚନ ଧନ ।

ହେଲେ ! ଆମେ ଅପାଠୁଆଙ୍କ ବୁଦ୍ଧିକୁ
ନାହିଁ ତୁମବାବୁ ମାନଙ୍କ ମାନ୍ୟତା
ଆମ ନିରକ୍ଷର ଜ୍ଞାନକୁ ବୁଝିପାରୁଛନ୍ତି ବୋଲି
ଆହା କରିବାକୁ ଆସୁଥିବା ସଂଗ୍ରାମୀ ଆଜ୍ଞାମାନେ
ଉସୁକାଉଥିବା ଅଭିଯୋଗରେ ହୁଅନ୍ତି ଶିକାର
ଏହାତ ପୋଲିସର ବେଇମାନ
କାହିଁକି ଆମ ପ୍ରତି ଏତେ ହୀନିମାନ ?
ତୁମ ବାପ ଅଜାଠାରୁ ଆମ ପୂର୍ବଜମାନେ
ଥିଲେ ବଳିୟାନ, ମହାନ୍ ନିର୍ଭୀକ

ଲଢ଼ିଥିଲେ ବିଦେଶୀ ଶାସନ ବିରୁଦ୍ଧେ
ତୁମ-ଆମ ସ୍ୱାଧିନତା ପାଇଁ
ଫାସିଖୁଣ୍ଟେ ଝୁଲିଥିଲେ
ବିର୍ସାମୁଣ୍ଡା, ଇନ୍ଦୋମାଝି, ଲକ୍ଷ୍ମଣନାୟକ
କାହିଁକି ରାଜକର୍ତ୍ତାମାନେ ଏବେ
ସ୍ୱାଧୀନତା ସଂଗ୍ରାମୀଙ୍କ ଦାୟାଦମାନଙ୍କୁ ମଣୁଛନ୍ତି ହେୟ ?
ଆମକୁ ନିର୍ବୁଦ୍ଧିଆ କହି
ପରବୁଦ୍ଧିରେ ଆମକୁ କରୁଛ ସଂହାର
କାହିଁକି ଆମେ ତୁମ ସତ୍ତାକୁ କରିବୁ ସ୍ୱୀକାର ?

ଆମେ ତ ଗାଉଁଲିଆ
ତୁମରି ଭାଷାରେ ଆମ ଚଳଣି ଦେଶିଆ
ତୁମପରି ସବୁ ହାକିମବାବୁମାନେ,
ଉପରେ ବସିଥିବା ଶାସନ ଦଣ୍ଡଧାରିଗଣ
କ୍ଷମତା ନିଶାରେ ହେୟ ମଣି ମଣି
ବିଦେଶୀ ଶାସକ ରୂପରେ
ଆମକୁ ଦେଖାଉଛନ୍ତି
ପରଦେଶୀ ଠାଣି ।
ସ୍ୱାଧୀନଦେଶେ ସଂବିଧାନ ହେଲା
ସମସ୍ତଙ୍କୁ ସମାନ ଅଧିକାର ବୋଲି ପାଠ କୁହାଗଲା
ମନ୍ତ୍ରୀ, ଯନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କ ପଦବୀ ରହିଲା
କିନ୍ତୁ କେତକଙ୍କୁ ଅନେକ ମିଳୁଛି
ଅନେକଙ୍କୁ କିଛି ବି ମିଳୁନି
ଆମ ପ୍ରାପ୍ୟ ଆମକୁ ଦେବାକୁ

ସଂବିଧାନର ତର୍ଜମା ହେଉନି
ଏବେ ଉତ୍ତର ଦେବକି
ଆମ ଅଧିକାର ତକ ଛଡ଼ାଇବା ବେଳେ
କାହିଁକି ତୁମ ବିବେକ ବାଧୁନି ?
ଆଇନର ଶାସନଟା
ଖୋଜିଲେ ମିଳୁନାହିଁ ସତ
ତଥାପି ନୂଆ ନୂଆ ଆଇନ ହେଉଛି
ଜଙ୍ଗଲ, ପରିବେଶର ସୁରକ୍ଷା ନିମନ୍ତେ
ଏବେ ଜଙ୍ଗଲବାସୀଙ୍କୁ ଅଧିକାର
ନୂଆ ବିଧାନରେ ଦେଇଥିବା ସତ୍ତ୍ୱେ
ପୁଣି ଜଙ୍ଗଲ, ଜମି ଆମର ନୁହଁ ବୋଲି
ଆଇନକୁ ପଦାଘାତ କରି କହୁଛି ସରକାର
ଏସବୁ ଚାଲିଯିବ କଂପାନୀ ହାତକୁ
ଆମେ ସବୁ ହୋଇଗଲୁ ପର ?

ଏବେ କିଏ କିଏ କହୁଛନ୍ତି
ନ୍ୟାୟମାଗିବାକୁ ଉଚ୍ଚନ୍ୟାୟାଳୟେ,
ଆମ ପକ୍ଷେ ଥିବା ଆଇନ ଆଶ୍ରୟେ
କିନ୍ତୁ ଆମେ ଜାଣିଛୁ
ନ୍ୟାୟାଳୟ ଦୁଆର ଆମ ପାଇଁ ମନା
କଂପାନୀମାନେ କରି ପାରନ୍ତି ନ୍ୟାୟକୁ ନିତି ବିକାକିଣା
ଏବେ ଭରସା କରିବୁ କାହାକୁ
ନିର୍ବାଚିତ ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ,
ସାଂସଦ ବିଧାୟକମାନେ

ଆମ ଭୋଟ ନେଇ କରନ୍ତି କଂପାନୀର ଓକିଲାତି
ରାଷ୍ଟ୍ର କରିନି ତିଆର ସମାଜମାନଙ୍କୁ
କିନ୍ତୁ ପ୍ରକୃତି ସାଥିରେ ଚଳିଆସୁଥିବା
ସମାଜମାନେ ରାଷ୍ଟ୍ରକୁ ଦେଇଛନ୍ତି ଜନ୍ମ,
ବିକାଶ ନାମରେ ବିନାଶ କରୁଛି ରାଷ୍ଟ୍ରର ନୀତି
ଭାଙ୍ଗୁଛି ସମାଜ
ସମାଜ ଭାଙ୍ଗିଗଲେ ରହିବନି ରାଷ୍ଟ୍ରର ଅସ୍ତିତ୍ୱ
ହଜିଯିବ ସ୍ୱାଧୀନତା,
ବନ୍ଧାପଡ଼ିଯିବ ଆମ ସାର୍ବଭୌମତ୍ୱ ।

ଶିଳ୍ପ ପାଇଁ ଚାଷକୁ ମାରୁଛ କାହିଁକି
କାହାରି ଜଣକର ଦୀର୍ଘାୟୁ ପାଇଁ
ଅନ୍ୟ କେତେକଙ୍କୁ ହତ୍ୟା କରାଯାଇ ପାରିବକି ?
ଏହାର ଉତ୍ତରରେ ଆମକୁ ମିଳୁଛି ଉପଦେଶ
ଚାଷରେ ଲାଭ ହେଉନାହିଁ
ଜମିଛାଡ଼ି ଟଙ୍କାନେଇ
ବଜାରରେ ସ୍ୱପ୍ନ ଦେଖିବାକୁ ।
ଅନେକ ପ୍ରଲୋଭନର ପ୍ରତିଶ୍ରୁତି ଦେଉଛନ୍ତି
ଏହା ସତ୍ୱେ ଆମେ କାହିଁକି ଯାଉନୁ
ଜାଣିଛ କାରଣ ?
ଶୁଣ ସର୍ବଜଣାମାନେ
ଶୁଣାଅ ତୁମ ଉପର ବାଲାଙ୍କୁ
ତୁମେ କେବେ କାହାରି
ଶୁଭ କାମନାକରିବା ସୌଭାଗ୍ୟ ପାଇନ
ନିଜ ନିଜ ମୂଳକୁ ଖୋଜିବାକୁ

ଚିନ୍ତା ଓ ଚେତନାର ପାଖକୁ ଯାଇନ
ଜାଣିଛ ! ଜମି ଛାଡ଼ିଦେଲେ
ଚାଷ ଛୁଡ଼ିଦେଲେ
ଖାଇବାକୁ ପାଇବେନି ଅସଂଖ୍ୟ ଜୀବନ
ଅନେକ ଦିନରୁ ଯନ୍ତ୍ରାୟନ ପାଠ
କୃଷିର ସର୍ବନାଶ ପାଇଁ
ଦେଖାଇଛି ଭସ୍ମାସୁର ବାଟ ।
ମାଟି ହରାଇଛି ଉତ୍ପାଦିକା ଶକ୍ତି
କଂପାନୀସାର ହୋଇଛି ଚାଷର ଅସାର
ପୋକମରା ଔଷଧର ଧକାରେ
ଧରିତ୍ରୀର ଅମୃତ କଳସ ହୋଇଛି ଜହର
ପୁଣି ଏବେ ଡ଼ାକରା ଆସିଲାଣି
ସବୁଜ ବିପ୍ଳବର କଂପାନୀ ଫାଶରୁ
ମୁକୁଳାଇବାକୁ ହେବ ଅନ୍ନ ଭଣ୍ଡାରକୁ
ରାସାୟନିକ ବିଷ ବଳୟରୁ ।
ଆମ ଭାତହାଣ୍ଡି ଭାଙ୍ଗିଦେବାକୁ
ଚାଲିଛି ଦରିଆପାରିରୁ ପ୍ରୟାସ
ଏକଥା ଘଟିଲେ ଦେଖିବ
ସର୍ବତ୍ର ହାହାକାର, ଅଖାଦ୍ୟ
ଅନଟନ, କେବଳ ସର୍ବନାଶ ।
ତାପରେ ବାବୁମାନେ ଭାବିପାର
ତୁମର କି ଯାଏ ଆସେ
କିଂତୁ ତୁମେ ସବୁ ଶୋଇପାରିବକି
ଦିନରାତି ଅକାଳ ଝଡ଼ରେ ?
କୋଟିପତି, ପୁଞ୍ଜିପତି ହିସାବ କରୁଥିବେ

ମୁନାଫା ଗଣିତର ଅଙ୍କ କଷୁଥିବେ
ଆରପଟେ ଭୁଭୁକ୍ଷୁଙ୍କ ଜନମେଳି
ବେକାର ଯୁବକ ଯୁବତୀ
ଭାଙ୍ଗୁଥିବେ ଲୁହାର ପାଚେରୀ
ଓ ଚକ୍‌ମକ୍ କରୁଥିବା ଆଲୁମିନିୟମ ନଗରୀ
ପ୍ରତିବାଦ ଓ ବାତ୍ୟାର ପ୍ରଳୟ ସାଗରେ
ଆସୁଥିବ ଭାସି ଆମ ରକ୍ତ ମିଶା
ବକ୍‌ସାଇଟି, ଲୁହାକ୍ରୋମର
ଖଣ୍ଡ ଖଣ୍ଡ ସାମୁକାର ରୂପାନ୍ତର ପ୍ରାଣୀ
ସାକ୍ଷ୍ୟ ଦେଇ ଖୋଲୁଥିବେ
କଂପାନୀ ଲୁଟର ଅକୁହା କାହାଣୀ ।

ଏସବୁ କାନ୍ଥଲେଖା
ପଢ଼ିବାକୁ ପ୍ରସ୍ତୁତ ନୁହନ୍ତି ବୋଲି
ଆମ ଶାସକମାନେ କହି ଚାଲିଛନ୍ତି
ଅହେତୁକ ଶିଳ୍ପାୟନ
ଗାଁ ଖାଲି କରି ସହରକୁ ଚାଲିଗଲାପରେ
ଆପେ ଆପେ ହୋଇଯିବ
ସଭିଙ୍କ ଦାରିଦ୍ର୍ୟ ମୋଚନ
ସତ କହିବେକି ଭାଗ୍ୟ ବିଧାତାମାନେ
ଶିଳ୍ପଜାତ ବିଳାସ ବ୍ୟସନ
ଭୋଗିବାକୁ ଅଛିକି ଆମର ସାମର୍ଥ୍ୟ
ଭୁବନେଶ୍ୱର-ଦିଲ୍ଲୀ ରାଜଧାନୀର ଅମୀରବାସିନ୍ଦା
ଏବେ ନିୟୁର୍କ, ୱାସିଂଟନ, ଲଣ୍ଡନକୁ

କଲେଣି ପ୍ରତିଯୋଗିତା
ସେମାନଙ୍କ ବିଳାସୀ ମହଲ
ଆଉ ଯୁଦ୍ଧବେପାରୀଙ୍କ ସଉଦା ପାଇଁ
ଆମ ରକ୍ତ ଝାଳ ଜୀବିକାର ମୂଳକୁ ମାରି
କରିଛନ୍ତି ଖଣି ସଂପଦକୁ ବିଶ୍ୱ ବଣିକ ଚାହିଦା ।
ଆମ ଖଣି ଆମ ପାଣିରୁ ଜାତ ଆଲୁଅରେ
ସେମାନଙ୍କ ରାତ୍ରିକେବେ ଅନ୍ଧାର ଦେଖିନି
ଆମର ସବୁଥାଇ ଆମ ପାଖରୁ ଚାଲିଗଲାପରେ
ଆମ ଅନ୍ଧାରରେ କେବେ ଆଲୁଅ ଜଳୁନି
କହ ! କାହାର ବିଳାସ ପାଇଁ
ବିକାଶର ବତୀ ଜଳେ
କିଂତୁ ଆମ ସର୍ବନାଶ କରି
ବିନାଶର ନିଆଁ ଜଳେ ।
କାହିଁକି ? ଆମେତ ଶିବ ନୋହୁଁ
କିମ୍ବା ଆମ ମଥାରେ ନାହିଁ ଭାଗିରଥିର ଶୀତଳ ଜଳ
ଆମ ବେକରେ ଗୁଡ଼ାଇ ଦେଉଛ
ବିଷଧର ସାପ ପଣ ପଣ ପ୍ରଦୂଷଣ କଳ
ଏ ମାଟିରୁ ଅମଳ ହୁଏ କପା, ଆଖୁ, ଝୋଟ
କାହିଁକି ଫିଟୁନି ସୂତାକଳ, ଚିନିକଳ ପାଇଁ ବାଟ
ଏସବୁ ଥିବାଯାକ କରୁଛନ୍ତି ବନ୍ଦ
ଖଣିଖୋଲା, ଜମି ବିକା
ବଡ଼ ବଡ଼ କଂପାନୀ ପ୍ରେମରେ
ଆମ କର୍ତ୍ତାମାନେ ହୋଇଛନ୍ତି ଅନ୍ଧ
ସେଦିନ ବୀରଭୂମି ଶହୀଦ ସ୍ମୃତି ସଭାଟାରେ

କହୁଥିଲେ ସଂଗ୍ରାମର ସାଥି 'ରାଜେନ୍ଦ୍ର-ଗଣନାଥ ଆଜ୍ଞା'
ଏବେ କିଏ ଗୋଟେ ଆସିଛି ଧରି
ସାମ୍ରାଜ୍ୟବାଦ ନାନୋ
ଆମ ସରକାରଙ୍କୁ ବସା ଉଠା କରାଉଛି
ଶସ୍ତାରେ ନେଇ ଆମ  କଞ୍ଚାମାଲ
ଶିଳ୍ପାୟନେ ନାମେ ଚାଲିଛି ଲୁଟରାୟନ ।
ଆଉଦିନେ ପ୍ରତିବାଦ ସମାବେଶେ କହୁଥିଲେ
ଆମ ସହଯୋଗୀ 'ଲିଙ୍ଗରାଜ-ସାମନ୍ତରା ଭାଇ'
କଂପାନୀକୁ ଆଣୁଛନ୍ତି
ଆମ ଚାଷ ଭାଙ୍ଗିଦେବା ପାଇଁ
ଏଠି ହେବ ଆଲୁମିନା-ଇସ୍ପାତ ବେଉସା
ଆସିବ ଡ଼ଲାର
କିନ୍ତୁ ଆମ ମା' ମାଟିରୁ ପାଉଥିବା
ଭାତ-ରୋଟି, ତେଲ ଡ଼ାଲି
ଆଣିବେ ଉଧାର
ତାପରେ ଆମ ସ୍ୱାଧୀନତା ପଡ଼ିଥିବ ବଂଧା
ଆମ ଦେଶଟାରେ ଥିବ ବିଦେଶୀ ବଜାର ।

ବାବୁମାନେ ତମେ କହୁଛ ଏତେ କଥା
ଦେଶ ଏବେ ଚାଲିଛି ଆଗକୁ ଆଗକୁ
ସମୃଦ୍ଧିର ହିସାବ କଲାବେଳେ
ପଣ୍ଡିତ ଅର୍ଥଶାସ୍ତ୍ରୀ, ବିଜ୍ଞ ପ୍ରଶାସକ
ଦେଖିପାରୁନାହାନ୍ତି କାହିଁକି
ଅର୍ଦ୍ଧାଧିକ ଭୋକିଲା ପେଟକୁ
ବୁଝାଇ ଦେବକି

ଦେଶ କହିଲେ କଣ ଶିଳ୍ପପ୍ରତି, ପୁଞ୍ଜିପତି,
କିଂବା ଶାସନରେ ବସିଥିବା ଭୋଟପତି
ଅବା ଏମାନଙ୍କ ସେବାରେ ଥିବା ପ୍ରଶାସକ ଜାତି ?
ଏ ସଭିଏ ଏକାଠି ହୋଇ ନେଇଯାଉଛନ୍ତି
ସମୃଦ୍ଧିର ଫଳ ସବୁତକ
ବିଲ ବାଡ଼ି ଡ଼ଙ୍ଗର ଭିତରେ ଅମଳ କରୁଥିବା କୃଷିଜୀବୀ
ସହର ନିର୍ମାଣରେ ଥିବା ଶ୍ରମଜୀବୀ, ବହୁଜନ
କି ଦୋଷ କରିଛନ୍ତି
ପାଇବାକୁ ନିଜ ନିଜ ହକ୍ ?
କିଏ ପାଏ ହାକିମ ଦରମା
କାହାକୁ ମିଳେ ଜନସେବା ନାମେ
ଭୋଟ ପାଇଗଲା ପରେ
ମାସିକ ଲକ୍ଷେ ଟଙ୍କାଏ ବେତନ
ତାପରେ ବି ଭର୍ତ୍ତିହୁଏ
ମନ୍ତ୍ରୀ, ଯନ୍ତ୍ରୀ, କୋଟିପତିଙ୍କ ପେଢ଼ିରେ
ସରକାରୀ ତହବିଲରୁ ହଡ଼ପ କଳାଧନ ।
ଏମାନଙ୍କ ପାଇଁ ଏସବୁ ଭାଗ୍ୟ ଫଳ
ଅବା ଉପୁରି ଅର୍ଜନ
କାମ ନ କରିବି ଅବସର ପରେ
ପାଇଥାନ୍ତି ହଜାର ହଜାର ଟଙ୍କାର ପେନ୍‌ସନ୍
ଏବେ ଅଫିସର ସାଥେ
ମନ୍ତ୍ରୀ–ବିଧାୟକ–ସାଂସଦ
ଭୋଟ ପାଇବାକୁ ଅଯୋଗ୍ୟ ହେଲାପରେ ମଧ୍ୟ
ଖଞ୍ଜା ହୋଇଛି ଆଜୀବନ ମାସିକ ଇନାମ

କି ପାପ କଲୁ ଆମେ ଅକ୍ଷମ ହେଲା ପରେ
ପାଇବାକୁ ତୁମ ପରି ପେନ୍‌ସନ୍‌ଟିଏ
ଚାଷୀ, ମୂଲିଆ ହୋଇ ଅନ୍ନଦାତା ?
ଦାରିଦ୍ର୍ୟର ତାଡ଼ନାରେ ଭରସା ହରାଇ
ପ୍ରତିଦିନ ଚାଷୀ କରେ ଆତ୍ମହତ୍ୟା ।

ଆମକୁ କହୁଛ ଗାଁ ଛାଡି ସହରକୁ ଯାଅ
ସେପଟେ ସହରରେ ଥିବା ଆମ ଭାଇ ବନ୍ଧୁ
କରିଛନ୍ତି ବାସ ଖଣ୍ଡେ ଖଣ୍ଡେ
ମାଟି ଛପର ଘର ବସ୍ତି ଅଞ୍ଚଳରେ
ତୁମ ଭାଇ ବନ୍ଧୁମାନଙ୍କ ସେବା କଲାପରେ
ଏବେ ପୁଣି ଜବରଦସ୍ତ ବସ୍ତି ଭାଙ୍ଗି
କରୁଛ ସେମାନଙ୍କୁ ବିସ୍ଥାପନ
ସହର ସୁନ୍ଦର କରଣ ନାମରେ
ଜନମଙ୍ଗଳକାରୀ ରାଷ୍ଟ୍ରର
ଯୋଜନାରେ ନାହିଁ ଗରିବଙ୍କ ସ୍ଥାନ
ରାଜଧାନୀରେ ପାଆନ୍ତି ମାଗଣାରେ ଜମି
ମନ୍ତ୍ରୀ,ତନ୍ତ୍ରୀ, ବିଧାୟକଗଣ
ଏପରି ପାତରଅନ୍ତର କାହିଁକି
କହିବେକି ଶାସକ ରାଜନେତାଗଣ ?
ଆମପାଇଁ ବିସ୍ଥାପନ ନାଁ ସବୁଠାରୁ ଡ଼ର
ଲୁଟିନେବାପାଇଁ ଏବେ ଚାଲିଛି
ବନ୍ଦର ନାମରେ ନନ୍ଦର ଫନ୍ଦର
କଂପାନୀ ସେବାରେ ଦେଇଦେବେ
ଆମ ନଦୀ, ନାଳ ଜଳ ଭଣ୍ଡାର

ଶେଷରେ ମାଲିକାନା ହକ
ସାଗର ଉପରେ କରିବେ ଜାହିର
ଭାସିବ ଭାରତସାଗରେ ବିଦେଶୀ ଆହୁଲା
ହେବ ପ୍ରଦୂଷିତ ସମୁଦ୍ରର ପାଣି
ଲୁଟିନେବ ଦରିଆପାରି ସବୁ ଖଣିମାଲ
ଶେଷରେ ବୁଡ଼ିଯିବ ମତ୍ସ୍ୟଜୀବୀଙ୍କ ବେଉଷାର ଭେଳା ।

ଗାଁକୁ କାମ ମା'କୁ ସମ୍ମାନ
ନିର୍ବାଚନ ବେଳେ ମାର ଧୂଆଁବାଣ
ଭୋଟ ପାଇଗଲା ପରେ ମା' ମାଟିକୁ ଧର୍ଷଣ
ଗାଁକୁ ଶୋଷଣ
ତୁମ ବିକାଶର ବିନାଶ ବାଟରେ
ହୁଏ ସର୍ବନାଶ ଆମ-ଜୀବିକା ଜୀବନ
ପ୍ରତିବାଦ ସ୍ୱରଟିକୁ
ଶୁଣେନାହିଁ ସରକାର ଖୋଲି କରି କାନ
କିଂବା କରେନି ତିଳେମାତ୍ର ସଭ୍ୟ ଆଚରଣ
କିଂତୁ ବନ୍ଧୁକ ମୁନରେ ଉତ୍ତର ଦେବାକୁ
ଆସୁଛି ବାରଂବାର ଧରି ପଲଟନ ।

ପୁଞ୍ଜିପତି ପାଇଁ ପୁଞ୍ଜିରେ ଚାଲିଛି ରାଜନୀତି
କଂପାନୀ ଦଉଡ଼ି ଶାସନ ଗାଈ
ଯୁଆଡ଼େ ଟାଣିଲେ ସିଆଡ଼େ ଯାଇ
ବିକାଶ ନାମରେ ଶିଳ୍ପ ଶିଳ୍ପ ବୋଲି କରୁଛ ଯୁକତି
କହ, କେବେ ହେବ
ଆମ ଦେଶ ଆମଗାଁ ଭ୍ରଷ୍ଟାଚରରୁ ମୁକତି ?

ସରକାର ଜାଣିଛନ୍ତି
ଆମେ ବିରୋଧ କରୁଛୁ
ବିନାଶ କରୁଥିବା ବିକାଶ ଯନ୍ତ୍ରକୁ,
ଗଣତନ୍ତ୍ରକୁ ହତ୍ୟା କରୁଥିବା
ତା'ରି ଚାଳକ ଓ ପରିଚାଳକ ମାନଙ୍କୁ,
ଏବେ ସରକାର ପାଇଁ
ହୋଇଅଛି ମହାକାଳ
ବିସ୍ଥାପନ ବିରୋଧୀ ଗଣ ଆନ୍ଦୋଳନ,
ସେଇଥିପାଇଁ ତ
ରାଜଶକ୍ତି କରିଛି ନିସ୍ପତ୍ତି
ଆମ ସ୍ୱର ଚାପିଦେବା ପାଇଁ
ହେଉଛି ତିଆରି ଦମନ ଆଇନ ।
ମାଓବାଦୀ ନାମରେ ଆମଲୋକଙ୍କୁ
ନେଉଛନ୍ତି ଜେଲ
ହେଲେ ଆମେ କେବେ କରିନାହୁଁ ହିଂସା କିଂବା ପ୍ରତିହିଂସା
ଯଦି ଆମରି ଉପରେ
କଂପାନୀ ପାଇଁ ପୋଲିସ୍ ଚଳାଇବ ଗୁଳି
ଦୂରରୁ ଦେଖୁଛନ୍ତି କିଏ ନା କିଏ
ହିଂସାର ଜବାବ ପ୍ରତି ହିଂସାରେ ଦେବାକୁ
ଅଛନ୍ତି ବିପ୍ଲବୀ ଦେବାପାଇଁ ଜୀବନକୁ ବଳି
ଗାନ୍ଧୀ ଗୋପବଂଧୁ କଥା ଆମେ ଜାଣିଛୁ ବୋଲି
ଗଣତନ୍ତ୍ରଟାକୁ ଟିକିଏ କରିଛୁ ଭରସା
ଯଦି ଗାଂଧୀଟାକୁ ମାଓ ନାମରେ
ଗୁଳିକରି ବଧ କରିଦେବ

ତାହାହେଲେ ଅନିବାର୍ଯ୍ୟ ହିଂସାରୁ ପ୍ରତିହିଂସା
ପୁଣି ତାର ଜବାବରେ ତୁମେ ମତୁଓ୍ୱାଲ ହେବ
ଦେଖାଯିବ ତୁମ ଆଖିକୁ
ଗାଂଧୀବାଦୀ, ମାଓବାଦୀ, ମଣିଷବାଦୀ
ସଭିଏ ମନ୍ୟାମବାଦୀ
ରାଜଶକ୍ତି ହୋଇଯିବ
ରକ୍ତ ମୁଖା ଏକଛତ୍ରବାଦୀ ।
ତା'ପରେ ଅରାଜକତାର ନିଆଁରେ
ଦେଶ ହୋଇଯିବ ଦଗ୍ଧ
ରହିବେନି କେହି, ଯେଉଁମାନେ ବି
ହୋଇଯାଉଛନ୍ତି ବିକାଶମନ୍ତ୍ରରେ ମୁଗ୍ଧ ।
ଯେତିକି ମହତ୍ତ୍ୱ ବଞ୍ଚିବାର ଅଧିକାର
ସେତିକି ଜରୁରୀ
ପ୍ରତିବାଦର ଅନ୍ତସ୍ୱର,
ତାକୁ ଯଦି ମାରି ଦେବାକୁ ଆସିଛ ବନ୍ଧୁକ ମୁନରେ
ମାଟି ମଟାଳର ଅନେକ
ଶହୀଦ ହେବେ ମହାତ୍ମା ରୂପରେ
ଅନ୍ୟାୟ, ଶୋଷଣ ଓ ବୈଷମ୍ୟର
ପ୍ରତିବାଦ ନିଆଁ କେବେ ଲିଭିବନି,
କେବେ ବି ହଜିପାରିବନି
ମଣିଷ ଭିତର ବିଦ୍ରୋହର ଧ୍ୱନି ପ୍ରତିଧ୍ୱନି ।

ଆମେ ଆମର ବଞ୍ଚିବାର ଅଧିକାର ପାଇଁ
ମା' ମାଟିର ସୁରକ୍ଷା ନେଇ
ଜୀବ-ଜଗତର ନିରନ୍ତର ଅସ୍ତିତ୍ୱକୁ,
ସଭ୍ୟତାକୁ ଗ୍ରାସୁଥିବା ଅସୁରମାନଙ୍କ
କବଳରୁ ମୁକ୍ତି ପାଇଁ
କଂପାନୀରାଜର ଫାଶୀ ଖୁଣ୍ଟରୁ
ଆମ ଭିଟାମାଟି ଛଡ଼ାଇ ଆଣିବା ସଂଗ୍ରାମରେ
ତୁମ ନାରକୀୟ ସଂହାରକୁ
ସାମନା କରୁକରୁ ଯଦି ସଭିଏ ବଳିପଡୁ
ତଥାପି ସେ ଦିନ ଆସିବ
ବିଦ୍ରୋହର ନିଆଁରେ
ଆମ ଲୁହ ଲହୁରେ ନିର୍ମିତ ଶିଳ୍ପ ନଗରୀର
ଲୁହାର ହୃତପିଣ୍ଡ ତରଳି ଯାଉଥିବ
ଆମ ରକ୍ତଖିଆ ବାବୁ ମାଲିକମାନଙ୍କ ଚିତା ଜଳୁଥିବ
କାରଖାନା ଚିମିନିର ପାଦ ତଳୁ
ଉଠିବ ଆମ କବରରୁ ଜିଅଁନ୍ତା କଂଙ୍କାଳ
ଫୁଟାଇବ ସଭ୍ୟତାର ଫୁଲ
ମା' ମାଟିକୁ କରିବ ଆବାହନ
କଞ୍ଚାମାଟିରେ, ସ୍ୱଚ୍ଛଳ ଜଳରେ
ଶୀତଳ ପବନରେ ଭାସୁଥିବ
ଆମ ସଂଘର୍ଷର ଇତିହାସ କଥା
ତାହା ହିଁ ଆମ ସଂଗ୍ରାମର ସାର୍ଥକତା
ଆମ ଜୀବନର ସଫଳତା
ଭବିଷ୍ୟତ ବଂଶଧରମାନେ
ଗାଉଥିବେ ବିଜୟର ଗାଥା ।

•••

# ମୃତ୍ୟୁ ଆସି ଫେରିଗଲା ପରେ ...

ମୃତ୍ୟୁ ଆସୁ
କିଛି ଯାଏ ଆସେ ନାହିଁ
ଯାହାକି ଧ୍ରୁବ ସତ୍ୟ ଜନ୍ମହେବାପରେ
କିଂତୁ ମୃତ୍ୟୁ ଯଦି ଆସି ଫେରିଯାଏ
ଆଉ ବାକି ବଞ୍ଚିବା ଅବଧି
ଜୀବନ୍ତ ଶରୀରରେ ଜୀବନଟା
ମୃତ ପାଲଟି ନଯାଉ
ସବୁ ଦେଖି, ଶୁଣି ନ ଜାଣିବା ନିରବତାରେ,
କିଂବା ମୃତ୍ୟୁ ପରୱାନ ଜାରିକରୁଥିବା
ମଣିଷ ରୂପଧାରୀ ଯମରଜାମାନଙ୍କ ଦାଉରେ
ଫୁଲ-ଫଳନ୍ତି ବୃକ୍ଷଲତାଙ୍କ
ପାଦ ତଳ ମାଟି ଶୁଖିଲା ନ ପଡୁ ।
ଭୋକ, କୁପୋଷଣ, କୁଶାସନ,
କଳାଧନର ସୃଷ୍ଟିକର୍ତ୍ତା ସନ୍ତ୍ରାସବାଦୀମାନେ
ଅକାଳ ମୃତ୍ୟୁ-ଆତଙ୍କର ଦଣ୍ଡା ଧରି
ପ୍ରତି ଦିନ ହୁଅନ୍ତି ହାଜର
ମାଟି ଛପର କୁଡ଼ିଆ ଦୁଆର ମୁହଁରେ
ତାର ପ୍ରତିରୋଧ କରୁ କରୁ
ଶେଷଯାଏଁ ଚାଲିବାକୁ ହେବ
ମୃତ୍ୟୁର ଶେଷପାଦ ପଥେ ।

ବିଜ୍ଞାନର ଉନ୍ମେଷରେ
ଅଜ୍ଞାନ ଅନ୍ଧାରରୁ ମଣିଷର ମୁକ୍ତି
ଫୁଟାଇଛି ସଭ୍ୟତାର ଫୁଲ
କିନ୍ତୁ ଫୁଟନ୍ତା ଫୁଲର ବୃକ୍ଷ ଲତା ଟଳି ପଡୁଛନ୍ତି
ପୁଞ୍ଜି ପଂଝାର ବିଜ୍ଞାନରୁ ଜାତ
ଟେକ୍ନୋଲଜିର କୁରାଢ଼ି ଚୋଟରେ,
ଅସଭ୍ୟତା କ୍ରୂରତା ବଢ଼ାଉଛି
ପ୍ରସୂତି ମାତାଙ୍କ ମରଣର ହାର
ହଜାରେକେ ସତୁରୀ
ଶିଶୁ ମୃତ୍ୟୁ ପରିଣାମ ତାର
ଏହା କେବଳ ଅକାଳ ମୃତ୍ୟୁ ନୁହଁ
କିନ୍ତୁ ହତ୍ୟା ପ୍ରାୟୋଜିତ ନୀତି ନିୟମର ଫଳ ।
କୁପୋଷଣ, ଅଖାଦ୍ୟ ଭକ୍ଷଣ
ଭୋକିଲା ପେଟର ଯନ୍ତ୍ରଣାରେ
ଆସନ୍ନ ମୃତ୍ୟୁ ଅବେଳରେ ଆସିଯାଏ
ଅପମୃତ୍ୟୁର ଖଳନାୟକ ହତ୍ୟାକାରୀ ରୂପେ
ଶାସନର ଖଣ୍ଡା ଧରି ବସିଥିବା
ଯମରାଜାମାନଙ୍କୁ ଦଣ୍ଡ ଦେବ କିଏ ?

ମୋ ପାଖକୁ ତିନି ଥର
ମୃତ୍ୟୁ ଆସି, ଯାଇଥିଲା ଫେରି

ଆକସ୍ମିକ ଧୂଳି ଝଡ଼ ପରି ।
କିଂତୁ ଛୁଇଁ ନଥିଲା ମତେ କାହିଁକି କେଜାଣି
ମୁଁ ମଧ ତାକୁ ଦେଖି ନ ଦେଖିଲାପରି
କାହାକୁ ଜଣାଇନଥିଲି
ପରିବାର, ଆତ୍ମୀୟମାନେ
ଯମର ପାଦତଳେ ମୁଣ୍ଡିଆ ମାରି
ମୃତ୍ୟୁଭୟର ପଞ୍ଜୁରି ଭିତରେ
ମତେ ବାଂଧି ରଖିଥାନ୍ତେ ବୋଲି ।

ଏବେ କିଂତୁ ମୃତ୍ୟୁ
ଅଚାନକ ଝଡ଼ ତୋଫାନ ନେଇ
ଆସି ଛୁଇଁଥିଲା ମୋ ଅଜାଣତରେ
ତାହା ବି ଫେରିବାକୁ ବାଧ ହେଲା
ଅନେକ ଶୁଭେଚ୍ଛୁ, ସହଯୋଗୀ ସହ
ବାରଂବାର ମୃତ୍ୟୁ ଆତଙ୍କର ଶିକାର
ସଂଗ୍ରାମୀମାନଙ୍କ କାମନାରେ
ମୋର ବଞ୍ଚିବାର ଆବଶ୍ୟକତା ଅଛି ବୋଲି
ଅଦେଖା ଅଜଣା ଯମ ହାତରୁ
ଛଡ଼ାଇ ଆଣିପାରିଛନ୍ତି
ଅବଶ୍ୟ ବଜାରୀ ସ୍ୱାସ୍ଥ୍ୟ ସେବା ନିଳୟମରେ ।
ଫୁଲଟିଏ ଫୁଟି ଝଡ଼ି ପଡ଼ିଲେ ବି

ତା ସ୍ନିଗଧ ମହକରୁ ବାଣୀ ଝରେ
ଜନ୍ମ-ମୃତ୍ୟୁ ମଧ୍ୟାନ୍ତରେ
ମଣିଷଟା ଅକୃତଜ୍ଞ ନ ହୋଇଯାଉ
ସୃଷ୍ଟିର ସର୍ବଶ୍ରେଷ୍ଠ ପ୍ରକୃତି ପାଖରେ
ଯାହାର ମହାର୍ଘ୍ୟ ଅବଦାନ
ବାୟୁ, ଜଳ, ମାଟି ସବୁ କିଛି ବଞ୍ଚିବାର ଉପାଦାନ
ତାର ସୁରକ୍ଷାରେ ସୁନିଶ୍ଚିତନ୍ତ
ସୁରକ୍ଷିତ ଅସଂଖ୍ୟ ଜୀବନ
ଏମାନଙ୍କ ଅପମୃତ୍ୟୁର ଷଡ଼ଯନ୍ତ୍ର
ବିକାଶ ଯନ୍ତ୍ରରେ ଚାଲିଥିବାବେଳେ
ନିରବତା ଆପଣାଇ
ପଳାତକର ପରିଚୟ ନେଇ
ଯଦି ଦେଖେ ବଞ୍ଚିବାର ସୌଖୀନ୍ ସ୍ୱପ୍ନ
ଏହାର ମୂଲ୍ୟାୟନ
ମା' ମାଟିକୁ ବିଶ୍ୱାସଘାତକତା ବିନା
ଆଉ ହୋଇପାରେ କଣ ?

ଅକାଳ ମୃତ୍ୟୁ ଦୁଆରୁ ମୋର
ଫେରିବା ବାଟ ଚାହିଁ ରହିଥିଲେ
ସାଥି, ସହଯୋଗୀ ଲଡୁଆ ମଣିଷ,
କିନ୍ତୁ କୁରୁକ୍ଷେତ୍ର ଛାଡ଼ି ଜ୍ଞାତି କୁଟୁମ୍ବଙ୍କ ହେଫାଜତରେ

ଅବସର ନେବା ପାଇଁ ନୁହଁ
ସଂଗ୍ରାମ ସରିନାହିଁ
ମଣିଷର, ପ୍ରକୃତିର ଅରି ମରିନାହିଁ
ଅମଣିଷରାଜ ସଂହାର ମେଳି ପାଇଁ
ଚାଲିବାକୁ ହେବ ଲମ୍ବା ରାସ୍ତା
ଲିଭିବାକୁ ଦିଆଯିବନି ପରିବର୍ତ୍ତନର ଆଶାଦୀପ
ହଜିବନି ସ୍ୱପ୍ନ ସବୁଜ ଧରଣୀର
ରାତିରେ ଆଲୋକ ଅଜାଡ଼ିବେ
ନିର୍ମଳ ଆକାଶରୁ ଉଜ୍ଜ୍ୱଳ ତାରକାମାନେ
କଳାବାଦଲ ଫାଟିଗଲାପରେ
ଅଂଧାର ଗୁଡ଼ିକୁ ପୋଛି ଦେଉଥିବ
ସକାଳ ଆଲୋକର ଗତ୍ୟାନ୍ତର ।
ପ୍ରତିମୁହୂର୍ତ୍ତରେ ଦୁର୍ନିତି ଦୁରାଚାର
ବୈଷମ୍ୟ, ଶୋଷଣର ବିଷାକ୍ତ ଅମ୍ଳରେ
ଶ୍ୱାସ ରୁଦ୍ଧ ଯନ୍ତ୍ରଣାରେ ବଞ୍ଚିଥାଇ
ପ୍ରତିମୁହୂର୍ତ୍ତରେ ମରିବା ଅପେକ୍ଷା
ମୃତ୍ୟୁପରେ ବି ବଞ୍ଚିବା ଲକ୍ଷ୍ୟ ପଥେ
ଚାଲୁଚାଲୁ ମୃତ୍ୟୁର ଅନିବାର୍ଯ୍ୟତାକୁ
ସାଦରେ ସ୍ୱାଗତ କରିବାକୁ ହେବ ।

●●●

# ଏ ମାଟିର ଯେତେ ଫୁଲ
# ଶବ ହେଲାପରେ

ମାତୃଭୂମିକୁ ସବୁଠାରୁ ବେଶୀ
ଭଲପାଆନ୍ତି ବୋଲି
ମା ମାଟିରୁ ବିଦାୟ ପ୍ରହର
ମାଟିମଟାଳଙ୍କ ସ୍ୱପ୍ନରେ କେବେ ନଥାଏ ଆସର
ଜମି, ଜଳ, ଜଙ୍ଗଲ
ସ୍ପନ୍ଦିତ ସମାଜ ଜୀବନ
ଯାହାର ଶୁନ୍ୟତାରେ ଶୁଖିଯାଏ
ଜାତୀୟ ଜୀବନର, ନଦୀ–ଝରଣାର ଧାର
ସମାଜ ଭିତରେ ମଣିଷ
ମଣିଷ ଭିତରେ ସମାଜ
ଯେବେ ଯେଉଁଠି ଜଳିଛନ୍ତି ଦୀପ ହୋଇ
ଜନମିଛି ଆଲୋକର ସୁନ୍ଦର ସଭ୍ୟତା
ଦେଖିହୁଏ ଭବିଷ୍ୟତ ସ୍ୱପ୍ନର ଅନେକ ବାସ୍ତବତା
ଯେପରି ମୁକ୍ତ ଆକାଶରେ ଦେଖାଦିଏ
ଆଲୋକ ବାଣ୍ଟୁଥିବା ଅନେକ ତାରକା
ଯାହାଙ୍କୁ ଆମେ କେବେ ଛୁଇଁ ପାରୁନା, ତଥାପି
ସେମାନେ ପୋଛୁଥାନ୍ତି ଆମ ଅନ୍ଧାର ଗୁଡ଼ିକୁ
ଅତୁଟ ରଖିଛନ୍ତି ମାଟି ଓ ଆକାଶର ସଂବନ୍ଧକୁ ।

କିନ୍ତୁ ମଣିଷଙ୍କ ମଧ୍ୟେ ଅମଣିଷ ପଲେ
ପଶି ଆସିଛନ୍ତି କେବେ ରାଜା-କଟୁଆଳ ବେଶେ
ହିଂସ୍ରପଶୁ ଆଚରଣ ଧରି
ମଣିଷ ରକ୍ତଖିଆ ସ୍ୱାଦର ଜିଭଟିଏ ନେଇ
କ୍ଷମତା ନିଶାରେ
ପୁଞ୍ଜିର ରାକ୍ଷସ ଦାନ୍ତରେ
ଶିକାର କରୁଛନ୍ତି ମାଟି ମଟାଳଙ୍କୁ
ପ୍ରକୃତିର ଭଣ୍ଡାରକୁ, ଲୁଟିନେବା ପାଇଁ ।

ବିବର୍ତ୍ତନ ପଥେ
ଶ୍ରମ ଓ ସଂଘର୍ଷରୁ ଉପଲବ୍ଧ
ସଭ୍ୟତାର ଫୁଟନ୍ତା ଫୁଲର ପାଖୁଡ଼ା ଗୁଡ଼ିକୁ
କରୁଛନ୍ତି ଖିନ୍ନଭିନ୍ନ
ସାମ୍ରାଜ୍ୟବାଦୀ ଐରାବତ ପିଠିରେ ବସିଥିବା ସଇତାନମାନେ
ନୂଆ ନୂଆ ଟେକ୍ନୋଲଜିର ଧାରୁଆ ଖଣ୍ଡାରେ ।
ଶୁଣ ! ଶୁଣ ! ରାଜଭକ୍ତଗଣ
ମିଛଟାରେ ଦେଶଦ୍ରୋହ ଅଭିଯୋଗେ
ଭୋଗୁଛନ୍ତି ମୃତ୍ୟୁଦଣ୍ଡ
ମା' ମାଟି, ଭକ୍ତ ସନ୍ତାନମାନେ
ବସିଛନ୍ତି ଅନ୍ଧ ଧୃତରାଷ୍ଟ୍ର ରାଜ ସିଂହାସନେ
କୌରବ ପୁତ୍ରମାନଙ୍କ ପ୍ରେମରେ

ଦେଶଟାକୁ ଲୁଟେରାଙ୍କ ହାତେ ଦେଇଛନ୍ତି ଟେକି
କେତେବେଳେ ବିକ୍ରିହୋଇଯିବ ରାଜ ସିଂହାସନ
ସେଥିପାଇଁ ପାପର ପ୍ରାୟଶ୍ଚିତ କରିବାକୁ ଅଛକି ପ୍ରସ୍ତୁତ ?
କଲୋମ୍ବସ ଭାସ୍କୋଡାଗାମାଙ୍କ ବଂଶଧର

ଜଳ ସ୍ଥଳ ଆକାଶରେ ଏବେ ହେଲେଣି ହାଜର
କଂପାନୀରାଜରେ କରିବାକୁ ପଣ୍ୟଦ୍ରବ୍ୟ
ଦେଶ ସମାଜର ପ୍ରାଣବିନ୍ଦୁ
ମଣିଷ ଜୀବନର ସକଳ ସଂଭାର ।
ରାଜଦରବାର ବାର୍ତ୍ତାରେ ଫମ୍ପାମେଘର ଗର୍ଜନ
ଝଡର ପ୍ରହେଳିକା ଆସେ ଭାସି
ଆତଙ୍କର ବାଦଲ ଭିତରେ
ରାଜରକ୍ଷୀ ବନ୍ଧୁକରୁ ଗୁଳି ବର୍ଷଣରେ
ମା ମାଟିର କୋଳେ ଜାତ ଫୁଟନ୍ତା ଫୁଲମାନେ
ଶବ ହୋଇଗଲାପରେ
ବିଳାପି ପ୍ରଜାପତିମାନେ କରନ୍ତି କାମନା
ଉଠନ୍ତାକି ଜିଅନ୍ତା କଂକାଳଟିଏ
ପ୍ରଳାପ କରିବାକୁ
ପ୍ରତିବାଦର ପ୍ରତିଧ୍ୱନିଟିଏ
ମହକହୀନ ବଗିଚାର ନିଶବ୍ଦତା ମଧ୍ୟେ ।

ପାଇକମାଳ ହେଉ କି କଳିଙ୍ଗନଗର–ଟମକା ଜଙ୍ଗଲ,
କାଶୀପୁରର ବାସଙ୍ଗମାଳି
କିଂବା ସୁନ୍ଦରଗଡ ସିଲିପୁଞ୍ଜି ଗାଁ,
ଗଜପତି ଅବା କୋରାପୁଟ
ନାରାୟଣପାଟଣାର ମଣିଷ ହତ୍ୟାକାରୀମାନେ
ଆତଙ୍କକୁ ଦେଉଛନ୍ତି ଜନ୍ମ
ଆତଙ୍କବାଦର ଦମନ ନାମରେ
ନିହତ ହେଉଛନ୍ତି ପାଞ୍ଚାଳି ସନ୍ତାନ
ଘୋଷଣାହୁଏ ଆତଙ୍କ ବିରୁଦ୍ଧେ ମହାଯୁଦ୍ଧ
ଅଧର୍ମ ବାଟରେ ହୁଏ ନିର୍ଦ୍ଦୋଷ ମଣିଷଙ୍କ ବଧ ।

ଯୁଦ୍ଧ ନୁହେଁ, ଶାନ୍ତି
ମଣିଷ ସଭ୍ୟତାର ବୀଜ
କିଂତୁ ଶାନ୍ତି ନୁହେଁ ଶ୍ମଶାନର ନିରବତା,
ଅଧିକାର ସହ ବଞ୍ଚିବାର ବାଟ
ନ୍ୟାୟ ଓ ସ୍ୱାଭିମାନ ଜୀବନ ଜୀବିକା
ଆସିବ ସଫଳତା ନେଇ
ବର୍ବରତାର କବର ଉପରେ
ନୁଆମଣିଷ ସଭ୍ୟତା ।
ତେଣୁ ପ୍ରଶ୍ନଟିଏ
ଆଇନର ଶାସନ ଡୋରିଧରି

ଗଣତନ୍ତ୍ରର ପ୍ରହରୀ ହୋଇଛ
ରକ୍ଷକ ହୋଇ ଭକ୍ଷକ ସାଜୁଛ
ମିଛ, ମିଛ, ମିଛର ଢ଼ାଲଧରି
ମଣିଷ ହୋଇ ମଣିଷ ସଭ୍ୟତାକୁ
ହତ୍ୟା, କାହିଁକି କରୁଛ ?

●●●

# ସ୍ୱପ୍ନ ଏକ ସୁନ୍ଦର ପୃଥିବୀଟିଏ

ଦର୍ଶନ ଆକାଂକ୍ଷାରେ ସୁନ୍ଦର ପୃଥବୀଟିଏ
ଯେତେବେଳେ ଦେଖେ ସ୍ୱପ୍ନ
ଠିଆ ହୋଇଯାଏ ଏକ ମହାଦ୍ରୁମ
ତା ପାଖେ ବସିଥାଏ ମର୍କଟୀ ଟିଏ
ଅଜାଡୁଥାଏ ମମତାର ଧାର
କରୁଥାଏ ସ୍ତନପାନ
ମା' କୋଳେ ବସି ତା' ପୁତ୍ର ହନୁମାନ ।
ଭୟରେ ଆଶଂକିତ ମୋର ମନ
ସ୍ୱପ୍ନ ଅଟକିଯାଉ ପଛେ ଆଗକୁ ନ ଯାଉ
ମହାଦ୍ରୁମ କରାଳ ଛାୟାରେ
ମାଙ୍କଡ଼ିର ଭବିଷ୍ୟତ ବଂଶଧର
ନ ଆସନ୍ତୁ ଧରି ଅସୁରର ଗୁଣ
ମା' ପିଲା କ୍ଷୁଧାରେ ନ କରନ୍ତୁ ଆର୍ତ୍ତନାଦ,
ସେ ଆଜି କଥା କହୁନଥିଲେ ବି
ଆସନ୍ତାକାଲିର ବିବର୍ତ୍ତନରେ
ମଣିଷକୁ ହେବ ରୂପାନ୍ତରିତ
ଫଳନ୍ତି ବୃକ୍ଷ ବନାନୀ ଓ ରହଣି ସ୍ଥାନ
ଅନ୍ୱେଷାରେ ଏକ ଜାତିହୀନ, ବିଷମତା ଶୂନ୍ୟ

ନ୍ୟାୟବନ୍ତ ସମାଜ କରିବ ନିର୍ମାଣ
ବଞ୍ଚିବାର ଅଧିକାର ଛଡାଇନେବାକୁ
କାହାରି ହାତେ ନ ରହୁ କ୍ଷମତାର ବାଣ ।

ଯେବେ ମୁଁ ସ୍ୱପ୍ନକୁ ଅଟକାଇ ଦିଏ
ଦୁଃ ସ୍ୱପ୍ନ ହାଜର ହୋଇଯାଏ
ମହାଦ୍ରୁମ ଭିତରେ ବିଦ୍ୟମାନ ଲଙ୍କାର ରାବଣ
ତାର ଲମ୍ୱା ଲମ୍ୱା ବାହୁରେ
ସୀତା ଅପହରଣ ପାଇଁ
ମାଙ୍କଡ଼ ମାଙ୍କଡ଼ିଙ୍କ ବସା ଭାଙ୍ଗୁଥାଏ,
ଫଳନ୍ତି ବୃକ୍ଷ ମୂଳକୁ ଉପାଡି
ଭୁଇଁତଳ ମାଟିକୁ ଚିପୁଡି ଚିପୁଡି
ହୀରାଯାକ ନେଉ ଥାଏ ତାଡ଼ି
ଜଳକୁ ଶୋଷୁଛି
ରକ୍ତ ପିପାସୁ ରାକ୍ଷସପେଟରେ
ସବୁକିଛି ଉସ୍ମ ହେବାରେ ଲାଗିଛି;
ଜମୁଛି ଗଦା ଗଦା ବର୍ଯ୍ୟ ଖଦାର ପାହାଡ଼
ଅନାଥ ଅନାହାର ହନୁମାନ
ଖୋଜୁଛି ତା ଭିତରୁ ପେଟପାଇଁ ଖାଦ୍ୟ
ମିଳିବକି ତାର ଉଜୁଡ଼ା ବଣରେ
ଝୁଡି ପଡିଥିବା ବାଉଁଶ କରିଡ଼ ।

ନାହିଁ ତାର ଧୈର୍ଯ୍ୟ
ଦେଖିବାକୁ ବିବର୍ତ୍ତିତ ଭବିଷ୍ୟତ
ହଜିଯାଉଛି ଜୀବନ-ଜୀବିକାର
ସବୁତକ ସାଧ ।

ଦୁଃସ୍ୱପ୍ନରୁ ମୁକ୍ତ ହେବା ପ୍ରଚେଷ୍ଟାରେ
ପୁଣି ସ୍ୱପ୍ନ ଦେଖିବାକୁ ଭୟ କରେ ମନ
କିନ୍ତୁ ଏବେ ଜଗତିକରଣର ବିଜ୍ଞାପନ
ଦେଖାଉଛି କୁଣ୍ଢି କୁଣ୍ଢି ସ୍ୱପ୍ନ
ତାକୁ ଦେଖିଲାପରେ ହେଉଛି ସ୍ମରଣ
ଦୁଃସ୍ୱପ୍ନର ମହାଦ୍ରୁମ
ପାଲଟି ଯାଇଛି
ମୁନାଫା ଲୋଭୀ ସଇତାନ,
ଏବେ ଧରିତ୍ରୀକୁ କରୁଛି ଦହନ ପ୍ରତି ମୁହୂର୍ତ୍ତରେ
ପୁଞ୍ଜି ଆଉ ଟେକନୋଲଜିର ମେସିନଗନ୍‌ରେ
ଚାଲିଛି ମାଡି ବିନାଶର ଯନ୍ତ୍ରାୟନ
ଦ୍ରୁତ ବିକାଶ ନାମରେ ।
ଭାଙ୍ଗିଯିବ ସବୁ ବଜାରୀ ସପନ
କେବଳ ଥିବ ବାକି
ଏକ ଶୁଖିଲା ଭୁଗୋଳ
ଓ ତା' ଭିତରେ ଉତପ୍ତ ବିଶ୍ୱର ବିଜ୍ଞାନ ।

ସତ୍ୟର ସନ୍ଧାନେ ଖୋଜିବାକୁ ହେବ
ହଜିଯାଇଥିବା ଜୀବନର ସକଳ ସାଧନ
ଭାଙ୍ଗିବାକୁ ହେବ ମହାଦ୍ରୁମର ରାକ୍ଷାସର ଖେଳ
ହନୁ ମାଙ୍କଡ଼ରୁ ବଣ ମଣିଷକୁ ରୂପାନ୍ତର ପରେ
ବନ ଓ ମଣିଷ ମଧ୍ୟରେ ବାନ୍ଧିବ ସେତୁ
କରିବାକୁ ପୃଥିବୀକୁ ସବୁଜ ସୁନ୍ଦର ।
ପରିବର୍ତ୍ତନ ଅବଶ୍ୟମ୍ଭାବୀ
ଆଜି ନହେଲେ ବି କାଲି
ମହାଦ୍ରୁମ ରାକ୍ଷସର ମୃତ୍ୟୁ ଅନିବାର୍ଯ୍ୟ
ରାବଣର ଲଙ୍କା ପୋଡି ଦେବାପରେ
ବିଦ୍ରୋହୀ ହନୁ ମଣିଷ ରୂପରେ
ଆଣିବ କ୍ରାନ୍ତି ଲମ୍ବା ଚଲାପଥେ
ପ୍ରତିବାଦ, ପ୍ରତିରୋଧର
ଇନ୍‌କିଲାବ୍ ଜିନ୍ଦାବାଦରେ ।

●●●

# କାହାର ଗଣତନ୍ତ୍ର ?

ସବୁଜ ସୁନ୍ଦର ଧରାକୁ
ମଣିଛନ୍ତି ସରା
ଗଣତନ୍ତ୍ର ! ଗଣତନ୍ତ୍ର ! ନାମ ଉଚ୍ଚାରଣେ
ଶବ୍ଦବାହାକ ମାନେ
ଦିଲ୍ଲୀରୁ ୱାଶିଂଟନ ଯାଏଁ
ଜନଗଣକୁ ପଣ କରି
ତନ୍ତ୍ରର ଧରିଛନ୍ତି ଚାବି
ଭୟର ରାତ୍ରି ପାଇବାକୁ ଦେବେନାହିଁ ବୋଲି
ସକାଳର ସୂର୍ଯ୍ୟକୁ ଅଟକାଇଛନ୍ତି,
ଅନ୍ଧାର ଓ ନିଃଶବ୍ଦତା ଭିତରେ
ଚାଲିଛି ହତ୍ୟା ଲୁଣ୍ଠନ ଡକାୟତି
ବିଶ୍ୱବଜାରୀମାନଙ୍କ ସ୍ୱାଗତରେ
କୁରୁସଭା ମଣ୍ଡପରେ ଖେଳୁଛନ୍ତି ଜୁଆ
ବନ୍ଧାପଡିଛି ଦିଲ୍ଲୀସିଂହାସନ ରାଜନୀତି,
ଶକୁନିମାନଙ୍କ କୁଟନୀତି ଫାଶେ
ଲୁଟୁଛନ୍ତି କୋଟିକୋଟିଙ୍କ ଦାନାପାଣି
ହଜିଯାଉଛି ଆମ ସ୍ୱାଭିମାନ
ଅନ୍ଧାରରେ ଆଲୁଅର ପ୍ରତିଶ୍ରୁତି
ଚୁକ୍ତି ସାକ୍ଷରିତ କରି

ୱାଶିଂଟନରୁ ଆସୁଥିବା
ଦୁର୍ଯ୍ୟୋଧନ-ଦୁଃଶାସନଗଣ
କରି ଚାଲିଛନ୍ତି ଖୋଲାବଜାରରେ
ପ୍ରକୃତି ସୁନ୍ଦରୀ ଦ୍ରୌପଦୀମାନଙ୍କ ବସ୍ତ୍ରହରଣ ।

ଅରାଜକତାର ଧୂଆଁରେ
ଆକାଶ ହୋଇଛି ଧୂମିଳ
ଗଣତନ୍ତ୍ରର ଅଂଧାର ରାତି ହୋଇଅଛି ଠିଆ
ସ୍ୱରାଜ ପାଇଁ ପୁଣି ଅପେକ୍ଷା କରିଛି
ପୁତ୍ରସ୍ୱାର୍ଥୀ-ଅନ୍ଧ ଧୃତରାଷ୍ଟ୍ରମାନଙ୍କ ଅକାଳ ମୃତ୍ୟୁରେ
ମୁକ୍ତିର ସୂର୍ଯ୍ୟୋଦାୟ ।
ଦେଖ ଦେଖ ଭଲଭାବେ ଦେଖ
ଗଣତନ୍ତ୍ରର ସୌଦାଗରମାନଙ୍କ
ଭୋଟ ନିଲାମ ପ୍ରତିଦ୍ୱନ୍ଦିତାରେ
ନିର୍ବାଚନ ଇସ୍ତାହାର ପୃଷ୍ଠାମାନଙ୍କରେ
ପ୍ରତିଶ୍ରୁତିର ନଦୀ ବହୁଥାଏ,
ଦୁଖୀ ଦରିଦ୍ରଙ୍କ ବିଶ୍ୱାସ ଭାଜନ ପ୍ରତିଯୋଗିତାରେ
ସୁଖର ସାଗରଟିଏ ସ୍ୱପ୍ନ ବାନ୍ଧିଥାଏ
ଭୋଟ ସରିଯାଏ, ସ୍ୱପ୍ନ ବି ଭାଙ୍ଗି ଭାଙ୍ଗିଯାଏ
ପ୍ରତାରଣାର ଲୁହରେ
ସାଗରପାଣି ଲୁଣି ହୋଇଯାଏ

ମରାମତ ଗଣତନ୍ତ୍ରର ନଉକାଟା ବୁଡିଗଲା ପରେ
ସ୍ୱାଧୀନତା କେବଳ ବାକି ଥାଏ
ଜଳଦସ୍ୟୁ ଓ ସାଗର ଭିତର ଅକ୍ଟୋପୋସମାନଙ୍କ
ଶୀକାର ହେବାର ଅନିବାର୍ଯ୍ୟତାରେ
ଇଛା ମୃତ୍ୟୁଟିଏ ।

●●●

# ଭଲପାଇବାର ଦୃଷ୍ଟିଟିଏ

ଏବେ କାହିଁକି ଆଉ ପଚାରୁନ
ଆମ ଅଦେଖା କାରଣ
ଦିନଟିଏ ନ ଦେଖିଲେ ସହପାଠୀଙ୍କୁ ପଚାରୁଥିଲ
କ୍ଲାସ ରୁମ୍ ଖୋଜି ଖୋଜି
ନୟାନ୍ତ ହେଉଥିଲ
କଲେଜ ଝିଅକୁ କେହି ବେଜିତ୍ କଲେ
ମତେ ନେଇ ତାକୁ କାନମୋଡ଼ା ଖୁଆଉଥିଲ ।
ଭାଷଣକୁ ମୋର କାନପାତି
ଟିପାଖାତାରେ ଭର୍ତି କରୁଥିଲ
ପୁଣି ମତେ ଦେଖିବା ମାତ୍ରେ
ତାକୁ ଗୋଟି ଗୋଟି କରି ପ୍ରଶ୍ନ ଜରିଆରେ
ପାଖୁଡ଼ା ପାଖୁଡ଼ା ଉତ୍ତର ଗୁଡ଼ିକ
ଫୁଲଟିଏ କରି ସାଇତି ରଖୁଥିଲ ।
ଏବେ ବି ମନେ ଅଛି ମୋର
ସବୁରିତ ସେହି ଏକ ସୃଷ୍ଟିକର୍ତ୍ତା
କାହିଁକି ଏତେ ବଡ଼ ପାତର ଅନ୍ତର
ମଣିଷ ମଣିଷ ଭିତରେ
ଠିଆ କରାଇଛି କିଏ
ଘୃଣା ଓ ଶୋଷଣର ପଥର ପ୍ରାଚୀର ?

ନଥିଲାକି ଏହା ପ୍ରଥମ ପ୍ରଶ୍ନ ତୁମର ?
ସେଦିନ ଉତ୍ତର ଥିଲା ମୋର
ସୃଷ୍ଟିକର୍ତ୍ତା ନାହିଁ କେହି ସବୁ କାଳ୍ପନିକ
କିଂତୁ ଏକା ସତ୍ୟ ଜୀବଜଗତର ବିବର୍ତ୍ତନ
ପ୍ରକୃତି ହିଁ ସବୁକିଛି
ତା'ବିନା ଆମେ କିଛି ନୁହଁ,
ତାର ବିବିଧତା ମଧ୍ୟେ ଯିଏ ଫୁଟାଇବ
ଐକ୍ୟ ଓ ସୌମ୍ୟର ଫୁଲଟିଏ
ତା ହେବ ସଭ୍ୟତାକୁ ସର୍ବୋତ୍କୃଷ୍ଟ ଦାନ ।
ଭାଗ୍ୟବାଦୀ ମଣିଷକୁ
ଶୋଷଣ ଜାଲରେ ଛନ୍ଦିଦେଇ।
ଭାଗ୍ୟ ବିଧାତାମାନେ ମନ୍ଦିର ତୋଳାଇ
ନିଜେ ନିଜେ ଭଗବାନ ନାମରେ
ବସିଯାଇଛନ୍ତି ଚଳମାନ ମୂର୍ତ୍ତି ହୋଇ ।
ତଥାପି ତୁମେ ପଚାରିଥିଲ
କାହିଁକି ଅନେକ ଘରେ ଚୁଲି ଜଳେ ନାହିଁ
ପେଟର ଭୋକ ଅସମ୍ଭାଳ ହେଲେ
ତା'ପାଇଁ ଅଛିକି ବ୍ୟବସ୍ଥା
ଆମ ସ୍ୱାଧୀନ ଦେଶରେ
ମନ୍ଦିରର ରନ୍ଧାଶାଳୁ, ସରକାରୀ ଗୋଦାମରୁ
ଲୁଣ୍ଠିନେବା ପାଇଁ ?
ମୋ ଉତ୍ତର ଥିଲା, ଚଳନ୍ତି ଦେବତାମାନେ

କରିଛନ୍ତି ଝରକା ଦୁଆରକୁ ବନ୍ଦ
ଗରିବର ରକ୍ତଖିଆମାନେ
ଜାତି, ଧର୍ମ ନାମେ କରିଛନ୍ତି ଫାନ୍ଦ
ଶ୍ରମକୁ ଶୋଷି ଶୋଷି
ପୁଞ୍ଜିବାଦରେ ହୋଇଛନ୍ତି ଅନ୍ଧ ।
ଆଉଦିନେ ବସିଥିଲେ ଆମେ ଦୁହେଁ
ତୁମ ଦୁଆର ମୁହଁରେ
ଚାଲିପାରୁନଥିଲା ଭୋକିଲା ବୁଢ଼ୀଟିଏ
ତାକୁ ନେଇ ହସପିଟାଲ ଗଲାବେଳେ
ମୃତ୍ୟୁ ତାର ଦୁଃଖ ହରିନେଇଥିଲା
ପୁଣି ପଚାରିଥିଲ
କ୍ଷୁଧା–ମୁକ୍ତିର ସ୍ୱପ୍ନ ଦେଖି ହେଉଛି କି ?
ମୋ ପାଖରେ
ସଦ୍ୟ ଉତ୍ତର ନଥିଲେ ବି
କହିଥିଲି, ସେ ଦିନ ଆସିବ
ବଂଚିବାର ଅଧିକାର ନେଇ
ଉପେକ୍ଷିତ ବହୁଜନ ଅଚଳ କରିବେ ରାଜପଥ
ବୈଷମ୍ୟର ପ୍ରାଚୀର ଭାଙ୍ଗିବେ
ଏକତାର ଫୁଲ ଫୁଟାଇବା ପାଇଁ
ମନ୍ଦିର ଭିତରୁ ଧନବାନ ଦେବତାମାନଙ୍କ
ହେବ ମୂର୍ତ୍ତି ବିସର୍ଜନ

ମାଟି ମଣିଷମାନଙ୍କ ଆରାଧ୍ୟ
ମା ମାଟି ଜଳ ବନ ଦେବତାଙ୍କୁ କରିବେ ସ୍ଥାପନ ।

ଆଉଦିନେ ଦୁହେଁ କାନ୍ଦିଥିଲେ
ସ୍ୱାଧିନତା ଦିବସର ପୂର୍ବରାତି
ପୋଲିସ ମାଡରେ ଆହତ
ରିକ୍ସାବାଲା ହରିଙ୍କ ଯନ୍ତ୍ରଣା
ଆମ ଦୁହିଁଙ୍କ ମଧ୍ୟରେ ବାଣ୍ଟିନେବା ପରେ
ସେଦିନ ଲୁହରେ ଲୁହମିଶାଇ
ଆଖିରେ ଆଖି ରଖି
ପାଇଥିଲେ ମଣିଷକୁ ଭଲପାଇବାର ଦୃଷ୍ଟିଟିଏ ।
ଦୁହିଁଙ୍କ ଭିତରେ ସୀମାଟାଣି ନଥିଲେ ବୋଲି
ଆମେ କେବେ ଦେଖିନଥିଲେ
ପ୍ରେମକାହାଣୀର ଭଙ୍ଗା ସପନଟିଏ
କିଂତୁ ତୁମର ଅନାବିଳ ପ୍ରୀତି
ଦେଖିବାକୁ ଦେଇଥିଲା ଅର୍ନ୍ତଦୃଷ୍ଟି
ନାରୀ ଅନ୍ତରସ୍ଥ ଥିବା ପ୍ରକୃତିର ସୁନ୍ଦର ସ୍ୱଭାବ
ଓ ଅଜ୍ଞାତରେ ଝଡିପଡୁଥିବା ବଣମଲ୍ଲୀର ଶୁଭ୍ରତା ।

ହଜିଛ ଏବେ ତୁମେ ଘର ସଂସାରରେ
ପତ୍ନୀ–ମାଆ–ଭଉଣୀ ଭୂମିକାରେ

ଅଜାଡୁଥିବ ସ୍ନେହ ସେବା ଅପାର

ପଚାରିବାକୁ ବେଳ ପାଉଛ କି ନାହିଁ

ବାଡିପଟେ ଥିବା ତୁମ ଚାକରାଣୀ ଘର

ଶିଶୁକନ୍ୟା ପାଇଁ ଅଛିକି ଆଜିଦିନର ଆହାର ?

ସେଦିନ ଉତ୍ତର ନଥିଲା ମୋଠାରେ

ଅନେକ ପ୍ରଶ୍ନର

ତୁମ ଆଖିରୁ ଝରୁଥିଲା ଅର୍ଦ୍ଧାହାର ଅନୁଭବର ଲୁହ ଧାର

ଆମ ପାଖେ ପ୍ରକୃତିର ସମ୍ଭାର ଥାଇବି

କୋଟିପତିଙ୍କ ମହଲା ପଖାରେ

ନଥିଲା ବହୁଜନଙ୍କ ଚାଳଘରେ

କାହିଁକି ବତୀଟିଏ ଜଳିପାରୁ ନାହିଁ ?

ଏବେ ବି ଅନେକଙ୍କ ଚୁଲିମୁଣ୍ଡେ ବିରାଡ଼ି ଶୋଇଥାଏ

ଓଧାଣି ବସେ ନାହିଁ ବୋଲି

ଦୁଇଟଙ୍କିଆ ଚାଉଳକୁ ପାଇବାକୁ

କୋଟି କୋଟି ଅଣ୍ଟିଏ ଆଶା ନେଇ ଧାଡ଼ି ବାନ୍ଧିଛନ୍ତି

ବିପିଏଲ କାଗଜଟିଏ କେହି ଦୟା କରିବାକୁ ।

ତଥାପି ଆଶାର ଦୀପ ଜାଳିବାକୁ ହେବ

ବଂଚିବାର ଅଧିକାର ପାଇଁ,

ମାଟିର ସନ୍ତାନ ମାନେ ଭଲ ପାଆନ୍ତି

ନଦୀ–ଝରଣା ପାହାଡ଼

ତା'ପାଖ ଡ଼ଙ୍ଗରଟାକୁ

ମୁଁ କିଂତୁ ଭଲ ପାଇଛି, ପାଉଛି ମଧ୍ୟ
ସେଦିନର ତୁମ ଲୁହରେ
ଭାସିଆସୁଥିବା ନିର୍ଲିପ୍ତ ଅନାବିଳ
ଭଲପାଇବାର ମଣିଷ ସ୍ୱଭାବଟିକୁ,
ଦେଖୁଛି, ପ୍ରତିଦିନ ଅନୁଭବର ପ୍ରତିଟି ବିନ୍ଦୁରେ
ନିୟମଗିରି, ବାଫଲିମାଳି, ଦେଓମାଳି, ଖଣ୍ଡାଧାର
ମାଟିର ମଣିଷଙ୍କ ଜୀବନ ସ୍ପନ୍ଦନ,
ନାରାୟଣପାଟଣାରେ ଆଦିବାସୀ ମେଳି
ମାଟିକୁ ଭଲପାଇ ଜୀବନକୁ ଦେଉଛନ୍ତି ବଳି
କଳିଙ୍ଗନଗର ଶହୀଦଙ୍କୁ ହଜାରେ ଜୁହାର
ସେମାନଙ୍କ ଜୀବନକାହାଣୀରେ ଅଛି ପ୍ରେମ ଆବାହନ
ଭଲପାଇବାକୁ ହେବ ମା ମାଟି
ଅନ୍ନଦାତା ଚାଷୀ, ଆଦିବାସୀ, ଦଳିତ, ସାହି ପଡୋଶୀକୁ
ନିଜ ପ୍ରଶ୍ନର ଉତ୍ତର ନିଜେ ଖୋଜିବାକୁ ।

ଏବେ ଆଉ ପ୍ରଶ୍ନ ପଚାରିବାକୁ କାହିଁ ତୁମ ବେଳ ?
କ୍ଲାସରେ ପିଲାଙ୍କ ପ୍ରଶ୍ନର ଉତ୍ତର ଦେଉ ଦେଉ
ଯାଉଥିବ ପାଚି ତୁମ ମୁଣ୍ଡବାଳ,
ସେଦିନର ପ୍ରଶ୍ନର ଉତ୍ତର ଖୋଜିବାକୁ ତୁମେ
ଶୁନ୍ୟ ଆକାଶଆଡ଼େ ଚାହିଁବ କି ଦୂର ଦୃଷ୍ଟିରେ ଥରେ
ଦେଖିବ ଉଡନ୍ତା ପକ୍ଷୀ କେତେ ମୁକ୍ତ,

ତା'ଜୀବନେ ନାହିଁ ଆବିଳତା
ନାହିଁ ତାର ଅନୀତିର ଧନ୍ଦା
ପୁଣି ମୁଣ୍ଡ ନୁଆଇଦେଲେ
ଆମ ସଭ୍ୟତାକୁ ପ୍ରଶ୍ନ
ଯୁବ ଯୁବତୀଙ୍କ ଜୀବନ-ଯୌବନ
କାହାପାଖେ ପଡିଯାଇଅଛି ବନ୍ଧା ?

●●●

# ବାଜିରାଉତ ବାଳୁତସେନା ଜିନ୍ଦାବାଦ

ଜିନ୍ଦାବାଦ ଜିନ୍ଦାବାଦ
ବାଜିରାଉତ ବାଳୁତସେନା ଜିନ୍ଦାବାଦ
ସ୍ୱାଧୀନତା ଜିନ୍ଦାବାଦ, ସ୍ୱାଭିମାନ ଜିନ୍ଦାବାଦ
ଆମ ଗାଁ, ଆମ ମାଟି ଜିନ୍ଦାବାଦ
କିଏ ତମେ ସରକାର
ଆସିଛ ଫୌଜଧରି
ଢିଙ୍କିଆ ଚାରିଦେଶ
ଆମ ବାପା ମା ଙ୍କ ଶବ ଉପରେ
ଗଢ଼ିବାକୁ ଇସ୍ପାତ ନଗରୀ ?
ଏବେ ପଚାରୁଛ
ଆମେ କାହିଁକି ସ୍କୁଲଛାଡ଼ି
ସତ୍ୟାଗ୍ରହେ ବସିଅଛୁ ତତଲା ବାଲିରେ
କରିଥାନ୍ତୁ ଆଉ କ'ଣ
ଆସିଛି ଯେତେବେଳେ କଂପାନୀ ବାହାଦୁର
ଛଡାଇନେବାକୁ ଆମ ଗାଁ କ୍ଷେତ, ଧାନ, ମୀନ, ପାନ ।

ଜୀବନ-ଜୀବିକାର ଅଧିକାର ନେଇ
ପ୍ରତିରୋଧ ବାଟରେ ଯନ୍ତ୍ରଣାର ଅନ୍ତନାହିଁ
ତୁମ ବନ୍ଧୁକମୁନର ସାମନା କରୁକରୁ
ଆମେ ହେବୁ ପିତୃମାତୃହରା
ଜମି ନେଇଯିବ, ପାଣି ସାରିଦେବ

ଜଙ୍ଗଲ ଯିବ ଚୁଲିକୁ
ତା'ପରେ ଆମ ଗାଁ ଜଳୁଥିବ
ବିଦ୍ୟାଳୟ ହୋଇଯିବ ଫୌଜ ଆଶ୍ରୟ
ପାଠପଢ଼ିବୁ କିପରି, ଦେଇପାରିବ ଉତ୍ତର
କହ ତୁମେ କଂପାନୀର ନା ଆମ ସରକାର ?
ଏବେ ତୁମେ ବିଦେଶୀ କଂପାନୀକୁ ଆଲିଙ୍ଗନ କର
ଗଢ଼ିବାକୁ ଏଠି ନୂଆ ନୂଆ ବିଦେଶୀ ସହର
ଆସିଥିଲା କେବେ ଇଷ୍ଟଇଣ୍ଡିଆ
ଏବେ ଆସିଛି ପୋସ୍କୋ ଇଣ୍ଡିଆ
କଳାଧନରେ ରାଜନୀତି ପଶାପାଲି ଖେଳାଇବାକୁ
ତମ ଅର୍ଥ ଓ କ୍ଷମତା ନିଶାରେ
ସବୁଜ ବନାନୀ ହଜି ଯିବ କଳା ବାଦଲ ବଳୟେ
ଦେଇଦେବ ଜମି, ପାଣି, ଖଣି
ଶୁଖିଯିବ ମହାନଦୀ, ବୈତରଣୀ ।
ଆମେ ବୁଝିଛୁ ଆମ ବାପା ମା'ଙ୍କ ଶ୍ରମର ଦରଜ
ଦେଉଛି ଦାନାପାଣି
ଜେଜେଙ୍କ ଜେଜେ ଅମଳରୁ
ଜୀବନ-ଜୀବିକାର ସ୍ରୋତ
ଧାନ, ପାନ, ମୀନ, ପାନପତର ବରଜ ।

ପଢ଼ିଛୁ ପାଠ ଆମ ବିଦ୍ୟାଳୟେ
ସ୍ୱାଧୀନ ହୋଇଛି ଦେଶ
ଆମେ ପଚାରୁଛୁ
ବିଦେଶୀ ଶାସନ ଏବେ ଆସିଲା କେଉଁଠୁ ?

ବିକାଶ ନାମରେ ହେବ ଆମ ସର୍ବନାଶ !
ଆସିଛ ଆମ ଗାଁକୁ ପଲଟନ ଧରି
ବାନ୍ଧିବାକୁ ତୁଣ୍ଡି
ନେଇଯିବ ଭଣ୍ଡି ଆମ ସଂବଳକୁ
ଭାଙ୍ଗିଦେବ ଗାଁ ଭାତହାଣ୍ଡି
ଏସବୁ ଅପରାଧ କରିବାକୁ
ତୁମକୁ କିଏ ଦେଲା ଅଧିକାର ?
ନିର୍ଲଜ ତୁମେ କହୁଛ
ଜଙ୍ଗଲ ଜମି ନୁହେଁ ଆମ ଗ୍ରାମବାସୀଙ୍କର
ବିଦେଶୀ ହାତେ ଟେକିଦେବାପାଇଁ
ଗାଉଛ ବିକାଶ ମନ୍ତ୍ରର
ଗାଁର ବିନାଶରେ ଆମ ଭବିଷ୍ୟତ ସଂପୂର୍ଣ୍ଣ ଅନ୍ଧାର ।
ତଥାପି ପଚାରୁଛ
ଆମେ ସ୍କୁଲନଯାଇ
କାହିଁକି ଶୁଣାଉଛୁ ପ୍ରତିବାଦ ସ୍ୱର,
ଶିଶୁ ନିର୍ଯ୍ୟାତନା ଅଭିଯୋଗ ଆଣି
ଏବେ ପ୍ରଶ୍ନ ଲଗାଇଛ
ପାଠପଢ଼ା ଛାଡି ଆନ୍ଦୋଳନ କାହିଁକି କରୁଛ
ତୁମ ଶାସନର ଆଖି ହୋଇଯାଇଛିକି ଅନ୍ଧ
ଦେଖିପାରୁନ ?
ଆମପରି ଶିଶୁମାନେ
ଆମରାଜ୍ୟ ଟାରେ ମା'କୋଳ ଛାଡି ମାଗୁଛନ୍ତି ଭିକ
କୁପୋଷଣ ସାଙ୍ଗେ ଚିକିତ୍ସା ଅଭାବ
ମରନ୍ତି ହଜାରକେ ସତୁରୀ

ଜନ୍ମରୁ ପାଞ୍ଚବର୍ଷିଆ ବାଳିକା ବାଳକ
କୁଆଡ଼େ ଗଲା ତମ ଲୁହ ?
ସେହି ବଞ୍ଚିତ ମାନଙ୍କୁ
ଶିକ୍ଷା ଅଧିକାର କେବେ ଦେବ
ଆମପାଇଁ ନକରି କୁମ୍ଭୀର କାନ୍ଦଣା
ସରକାର ତୁମେ ସତକଥା କୁହ ?

ବାରବରଷର ବାଜିରାଉତ ଫିରିଙ୍ଗି ଶାସନେ
ହୋଇଥିଲା ଶହୀଦ ଦେଇ ଜୀବନକୁ ବଳି
ଏବେ ଆମେ କରୁଛୁ ଆମ ଗାଁ ମା ମାଟିର ଜିନ୍ଦାବାଦ
ପାଠ ପଛେ ଯାଉ ଭିକ୍ଷାଥାଳି ଧରିବୁନି ବୋଲି
ଆମେ ଅଟଳ, ଛାଡ଼ିବୁନି ଆମ ଗାଁ ଚାଷବାସ
କରିଛୁ ଶପଥ ମୁଣ୍ଡେ ଲଗାଇ ଗାଁ ଦାଣ୍ଡଧୂଳି
ସ୍ୱାଧୀନଦେଶର ବେଇମାନୀ ଶାସନରେ ଖାଇବାକୁ
ପୋଲିସର ଗୁଳି,
ଫେରିଯାଅ କଂପାନୀର ବାହାଦୁର ମାନେ
ଆଣିଥିବା ଲୁଟେରା ସାଥିରେ
ଆମକୁ ବଞ୍ଚିବାକୁ ଦିଅ, ଆମ ଗାଁ ମାଟି କୁଟୀରରେ
ନଚେତ ଜନଯୁଦ୍ଧ ଅନିବାର୍ଯ୍ୟ
ଇତିହାସ ପୃଷ୍ଠାରେ
ବାଜିରାଉତ ବାଳୁତ ସେନା ରହିବ ଅମର
ଇନକିଲାବ ଜିନ୍ଦାବାଦ ଧ୍ୱନି ପ୍ରତିଧ୍ୱନିର ଶବ୍ଦରେ
ବାଜିରାଉତ ବାଳୁତ ସେନା ଜିନ୍ଦାବାଦରେ ।

●●●

# ବୁଢ଼ିଆଣି ବସା ଭାଙ୍ଗିଗଲା ପରେ

ଲୋହିଆ ଆଶ୍ରମ ବଖରାଟିରେ
ମୋର ନିତିଦିନିଆ କାର୍ଯ୍ୟ ଚାଲେ
ପତ୍ରପତ୍ରିକା କାଗଜବହି ଗହଳି ଭିତରେ
ଚୌକିରେ ବସି ଟେବୁଲ ଉପର
ବହିଗଦାରୁ ପୃଥିବୀ ସାଗରର ଟୋପେ
ଅଧ୍ୟୟନ କରୁ କରୁ
ପ୍ରକୃତି ଓ ମଣିଷ କଥା ପଢ଼ିଲେ ନ ସରେ
ତାରି ଭିତରେ ବାଘ, ହାତୀ, ସିଂହ ଶୃଗାଳଙ୍କ ସହ
ଆଦିମ ମଣିଷର ଅସ୍ତିତ୍ୱର ପ୍ରଶ୍ନର ଉତ୍ତର
ଖୋଜୁ ଖୋଜୁ ଟେବୁଲ ଆବରୋଇଥିବା
ଅଳନ୍ଧୁ ପୋଛି ହୋଇଯାଏ ।
ଚିହ୍ନା ଅଚିହ୍ନା ଆସନ୍ତି ଯାଆନ୍ତି
ତର୍କ ବିତର୍କର ଆସର ବି ହୁଏ
ଅନେକ ଥର ସହଯୋଗୀଙ୍କ ମେଳରେ
ବିଷୟର ପରିଧି ବଢ଼ି ବଢ଼ି ଯାଏ,
ପ୍ରକୃତି ଭିତରେ ମଣିଷର ଅବସ୍ଥିତି
ପଶୁପକ୍ଷୀ, ବୃକ୍ଷଲତା ନଦୀ ଝରଣା
ପାହାଡ ପର୍ବତ ମାଟିରୁ ଆକାଶ
କେହି କାହାକୁ ଛାଡ଼ି ରହିପାରିବେନି ବୋଲି
କଥାବି ଅସରନ୍ତି ରହେ ।

କିଂତୁ କେବେ ଆସିନଥିଲା ନଜରକୁ
ମୋ ପାଖରେ ବୁଢିଆଣିଟିଏ
ବାନ୍ଧିଛି ବସାଟିଏ ଘର କୋଣଟାରେ
ନିଜେ ବୁଣିଥିବା ସୁନ୍ଦର ସୂକ୍ଷ୍ମ ଜାଲଟି ମଧ୍ୟେ,
ତା ଜ୍ଞାନ କୌଶଳ ପାଖେ
ଅହଂକାରୀ ବୈଷୟିକ ବିଜ୍ଞାନୀ ମଣିଷଟା
ହାର ମାନିବାକୁ ବାଧ୍ୟ,
ସେତ ପ୍ରକୃତି ରାଇଜର ମହାନ ବିନ୍ଧାଣୀ
ତା ଚଳଣି
ସ୍ୱାବଲମ୍ବୀ, ସ୍ୱାଧୀନ ଓ ଅତିସ୍ୱାଭିମାନୀ,
ଆଜି ତାକୁ ପ୍ରଥମ ଥର ଦେଖୁ ଦେଖୁ ସକାଳଟାରେ
ଝାଡୁଦାର ଝାଡୁମାରି ଘରକୁ ସଫାକରି ଦେଲା
କିନ୍ତୁ ଫୋପଡା ଧୂଳିମଳି ଅଳନ୍ଧୁ ଗଦାରେ
ହଜିଗଲା ଅସ୍ତିତ୍ୱ ବୁଢ଼ିଆଣିର
ଓ ତା' ନିର୍ମାଣ ଭିତରେ
ଉଙ୍କିମାରୁଥିବା କୋଣାର୍କର କଳା ଓ ଭାସ୍କର୍ଯ୍ୟ ।
ମୁଁ କେବଳ ଦେଖୁଥାଏ ମୂକ ହୋଇ
ଧାଉଁଥାନ୍ତି ଇତଃସ୍ତତଃ ଅସହାୟ
ବିସ୍ଥାପିତ ବୁଢ଼ିଆଣି ଓ ତା ପିଲାମାନେ
ଅନ୍ୟତ୍ର ସ୍ଥାନର ସନ୍ଧାନେ
ପୁଣି ବସାଟିଏ ବାନ୍ଧିବାକୁ,
ମୁଁ କିଂବା ମୋ ପାଖ ଥିବା ଲୋକ
କେହି ଆହାପଦେ ବୋଲିବାକୁ କଲୁନାହିଁ ମନ
କ୍ଷୁଦ୍ରାତି କ୍ଷୁଦ୍ର ପ୍ରାଣୀଟିଏ ବୋଲି
ତା ଅଭିଯୋଗ ଶୁଣିବାକୁ ଗଲା ନାହିଁ କାନ ।

ବାରଘଣ୍ଟାପରେ ଆସିଗଲା ସଞ୍ଜ
ଚୌକିରେ ବସି ଦେଖୁଛି ମୁଁ
ବାସହରା ବୁଢ଼ିଆଣି
ବୁଣୁଛି ଜାଲଟିଏ କାନ୍ଥର ଆର କୋଣଟିରେ
ତା'ଆସରା କୋଣାର୍କର ମୁଣ୍ଡିମାରିବାକୁ କରୁଛି ସଂଘର୍ଷ
ସାମନାରେ ଥିବା ଟିଭିପରଦାରୁ
ଆସୁଛି ଖବର
ଢିଙ୍କିଆ ଚାରଦେଶର ମାଟି ମଣିଷମାନେ
ଭୋ ଭୋ କରି କାନ୍ଦୁଛନ୍ତି
ମାଟିକୁ ଜାବୁଡ଼ି ଧରି
ଜମିରେ ଲୋଟି ଯାଉଛନ୍ତି
ବଜ୍ରାଘାତ କରି
କଂପାନୀ ବାହାଦୁରମାନେ ଫୌଜଧରି
ପାନବର, ଧାନକ୍ଷେତକୁ ଭାଙ୍ଗିଦେଉଛନ୍ତି
ମାଟି ମଟାଳର ଜୀବନଜୀବିକା ଯାଉଛି ଉଜୁଡ଼ି
ଜମି, ଜଳ, ଖଣି ଶୋଷିନେବା ପାଇଁ
ପୋସ୍କୋ କଂପାନୀର ରାସ୍ତା ଯାଉଅଛି ଖୋଲି
ବାସୁବେହେରା, ସନା ଖଟୁଆ,
ସେମାନଙ୍କ ଝିଅ ବୋହୂମାନେ ଖାଇଛନ୍ତି ମାଡ
ଫାଟିଛି ଗାଲ ଆଉ ପିଠିର ହାଡ
ଆକଟେଇଲେ ବୋଲି
ଶ୍ରମ ଦେଇ ଗଢ଼ିଥିବା ଦାନାପାଣିର
ପାନବରଜର ବାଡ ।

ଗାଁର ଆରପଟ ମୁଁହରେ ଶୁଭୁଛି ପ୍ରତିବାଦ ସ୍ୱର
ଧାରଣାରେ ବସିଛନ୍ତି,
ଆବାଳ ବୃଦ୍ଧ ବନିତା
ପ୍ରଚଣ୍ଡ ଖରାଖିଆ ବାଲି ପଡିଆରେ
ଇଞ୍ଚେ ବି ଜମି ନ ଛାଡ଼ିବା ପାଇଁ
ସାମନା କରୁଛନ୍ତି
କଂପାନୀ ସେବାରେ ଆସିଥିବା ଫୌଜ ବନ୍ଧୁକ ମୁନର
ପ୍ରକୃତି ଦତ୍ତ ଜମି, ଜଳ ଓ ସମୁଦ୍ରର
ସୁରକ୍ଷାରେ ନିଜ ଅଧିକାର ନେଇ ।
ଏବେ ମୋ ବିବେକ କରୁଛି ସେହି ପ୍ରଶ୍ନ
ମୋର ନିରବତାକୁ,
ମୁକ ହୋଇ ଦେଖୁଥିବା
ବିସ୍ଥାପିତ ବୁଢ଼ିଆଣୀର ଦୁଃଖ ଦୁର୍ଦ୍ଦଶାକୁ,
ଯେଉଁ ପ୍ରଶ୍ନ ଡ଼ିଙ୍କିଆ ଚାରିଦେଶର ଲଢୁଆ ଜନତାଙ୍କର
ସଭ୍ୟସମାଜକୁ, ସଚେତନ ନାଗରିକ ମାନଙ୍କୁ,
ଭୋଟପାଇଁ ବିକଳ ହେଉଥିବା ରାଜନେତା ଓ ରାଜନୀତି ଦଳମାନଙ୍କୁ,
ସର୍ବହରା ରାଜନୀତିର କମ୍ରେଡମାନଙ୍କୁ,
ନିରବ କାହିଁକି ଜବାବ ମାଗିବାକୁ
ଗାଁର ମଣିଷ ମାନଙ୍କଠାରୁ ମା ମାଟିକୁ
ଛଡାଇନେବାକୁ ଅଧିକାର ଦେଲା କିଏ
ଗଣତନ୍ତ୍ର ହତ୍ୟାକାରୀ ସଇତାନୀ ଶାସକ ମାନଙ୍କୁ ?

●●●

# ଅଳିଆରୁ ଜନ୍ମ

ଉପରେ ଥିବା ଅସାଧାରଣ, ସହରୀବାବୁମାନଙ୍କ ଦୃଷ୍ଟିରେ
ଗାଁର ସାଧାରଣ ଚାଷୀ ମୁଲିଆଟି ଅଜ୍ଞାନୀ
ଓ ବାରିପଟ ଅଳିଆଗଦା
ଅପରିଚ୍ଛନ୍ନ ମଣିଷର ପରିଚୟ !
ଗୋବର ପାଉଁଶ ମଳମୁତ୍ର ମିଶା ଅଳିଆର ରୂପାନ୍ତର
ଖତ ହୋଇଯାଏ ମା ମାଟିର
ଉତ୍ପାଦନ ଶକ୍ତିର ଆଧାର ... ।

ଗାଁ ଇସ୍କୁଲ ପାଠପଢ଼ା ବେଳେ ଯିଏ
ହୁଏ ପୋଥିବାଇଗଣ–ଚାଷରେ ବିଫଳ
ସହରୀ ଆଖିରେ ସେ ହୋଇଯାଏ ଖତଗଦାର ନକଲ
ଗାଁ ମାଟିରୁ ଜନମି
ବାବୁ ହେବା ସ୍ୱପ୍ନରୁ ବଞ୍ଚିତ
ସମୟରେ ପୁଣି ହୁଏ ସେ
ବାଡି ବାଇଗଣର ସଫଳ କୃଷିକର୍ତ୍ତା
ପରିଚୟ ତାର ଦୁନିଆର ଅନ୍ନଦାତା
କୃଷିଡିଗ୍ରୀଧାରୀ ଠାରୁ ଅଧିକ
ତାର ଅନୁଭବୀ ଜ୍ଞାନ ବଞ୍ଚାଇଛି ଚାଷ
ପଙ୍କରୁ ଜନମି ପଦ୍ମ
ଯେପରି ଦିନେ ଚହଟାଏ ବାସ ।
ଅଳିଆଗଦାରୁ ଜନମି ମାଟିର ମଣିଷମାନେ
ଭଲପାଆନ୍ତି ଗାଁର ମାଟିପବନକୁ, ବିଲବାଡିକୁ

ଯେହେତୁ ସେମାନେ ଅହିଂସ
କରିନାହାନ୍ତି ବ୍ୟବହାର କେବେ
ଭୋଟପାଇ ଠକୁଥିବା ଶାସକ ବିରୁଦ୍ଧେ
ହାତେଥିବା ଦା, ଫାରଡା, ଲଙ୍ଗଳମୁନକୁ ।
ସବୁଜକ୍ଷେତରେ ଶ୍ରମର ଝରଦେଇ
ଫଳାନ୍ତି ସୁନାର ଫସଲ
କାଟି, ବାନ୍ଧି ଘରକୁ ଆସିଲାପରେ
ଶ୍ରମର ହିସାବରେ ମିଳେନାହିଁ ପ୍ରାପ୍ୟ
ସାହାରା ଖୋଜି ଖୋଜି ଶେଷରେ ଆଦରେ
ଋଣବୋଝରୁ ମୁକ୍ତିପାଇଁ ଆତ୍ମହତ୍ୟା ଏକମାତ୍ର ବାଟ ।
ଅସାଧାରଣମାନେ କୁହନ୍ତି
ଉଚ୍ଚଜାତି, ଉଚ୍ଚଶିକ୍ଷା, ଉଚ୍ଚଭାଷାର ପରିଚୟ ଦେଇ
ଆଦିବାସୀଙ୍କୁ ଲଙ୍ଗଳା ଅସଭ୍ୟ
କିଂତୁ ଜଙ୍ଗଲ, ଡଙ୍ଗରକୁ ଭଲପାଉଥିବା
ଆଦିମ ଅଧିବାସୀ କେବେ ମାଗେନାହିଁ ଭିକ
କିଂବା କାହାର ସିନ୍ଧୁକ ତାଡ଼େନାହିଁ
କରିବାକୁ ଡକାୟତି କାମ ।
ପରମ ସ୍ୱାଭିମାନୀ ବୋଲି
ପର ସଂପତ୍ତିରେ କେବେ ନାହିଁ ତାର ଲୋଭ
କିଂତୁ ଉଚ୍ଚାସନେ ବସିଥିବା ଲୋକେ
ଖାଇ ଖାଇ କରନ୍ତି ପେଟକୁ ଓସାର
ଭିକ୍ଷାଥଳି ଧରି ଆତ୍ମ ସମ୍ମାନକୁ ଦେଇଥାନ୍ତି ବଳି
ଦରବାର ଦୁଆରେ ହାତଯୋଡ଼ି ହୁଅନ୍ତି ହାଜର
କାହାକୁ ମିଳେ ପଦୋନ୍ନତି, କାହାକୁ କମିସନ

କାହାକୁ ମିଳେ ଲାଇସେନ୍ସ
ଲୁଟିବାକୁ ଜନତାଙ୍କ ଜୀବିକା ସାଧନ ।

ଯାହାଙ୍କୁ ଉପର ଲୋକମାନେ
ଏବେ ବି ରଖିଛନ୍ତି
ଅଛୁଆଁ ଦଳିତ ଜାତିରେ
ସେମାନେ ମୁକ୍ତ କେବଳ
ସଂବିଧାନ ପୋଥି ଆଇନରେ
କିଂତୁ ରହିଛନ୍ତି ବନ୍ଦୀହୋଇ
ସମାଜ ସଂସ୍କୃତିର ପୁରୁଣା ପାଚିରୀ ମଧ୍ୟରେ ।
ସମୟର ଚକ ଏବେ ଘୁରୁଛି ତେଜରେ
କେତେବେଳେ ଖସିଯିବେ ତଳିଆ ଶ୍ରେଣୀକୁ
ଉପର ଅସାଧାରଣମାନେ
ଯେତେବେଳେ କୃଷକ ଟେକିବେ ଲଙ୍ଗଳ
ହାତେ ଦା ଧରି କାଟିବେ
ଉଚ୍ଚମାନେ ବସିଥିବା ଚୌକିର ଗୋଡ଼,
ଚକରା ବିଷୋୟୀ, ଲକ୍ଷ୍ମଣନାୟକଙ୍କ ଦାୟାଦମାନଙ୍କ
ଧନୁରୁ ତୀର ଯେବେ ଭେଦିବ ରାଜସିଂହାସନ
ସେଦିନ ଆଦିବାସୀର ଜଙ୍ଗଲ ହୋଇବ ସ୍ୱାଧୀନ
ଦଳିତ ଛଡାଇ ଆଣିବେ ଜମି ଅଧିକାର
ଭାଙ୍ଗିଦେବେ ଜମିକୁ ହାତେଉଥିବା
ଲୁଟେରା କଂପାନୀମାନଙ୍କ ମେରୁଦଣ୍ଡ ହାଡ
କ୍ରାନ୍ତିର ବହ୍ନି ଜଳାଇବା ପରେ
ଭୁଷୁଡ଼ିଯିବ ସାମାଜିକ ବିଭେଦର ବାଡ଼ ।

●●●



ପ୍ରଫୁଲ୍ଲ ସାମନ୍ତରାଙ୍କ ଜନ୍ମ ୬୦ବର୍ଷ ତଳେ ଏକ ଛୋଟ ଗାଁରେ। ଗାଁର ନାମ ନିମୁଣ୍ଡିଆ ( ଗଞ୍ଜାମ ଜିଲ୍ଲାର କବିସୂର୍ଯ୍ୟନଗର ପଞ୍ଚାୟତ ସମିତି)। ଜଣେ ରାଜନୈତିକ ଓ ସାମାଜିକ କର୍ମୀରୂପେ ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତ କରିବାଠାରୁ ଆରମ୍ଭ କରି ପ୍ରଚଳିତ ପୁଞ୍ଜିସର୍ବସ୍ୱ ଅର୍ଥବ୍ୟବସ୍ଥାର ପୃଷ୍ଠପୋଷକ ସାମ୍ରାଜ୍ୟବାଦୀ ପୁଞ୍ଜିବାଦ ଶକ୍ତିବିରୋଧରେ ବିଭିନ୍ନ ଗଣସଂଗ୍ରାମର ସହଯୋଗୀରୂପେ ସେ ପରିଚିତ। ପ୍ରାକୃତିକ ସମ୍ପଦର ସୁରକ୍ଷା ଆନ୍ଦୋଳନର ନେତୃତ୍ୱ ନେବାସହ ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ଜଣେ ନିୟମିତ ସ୍ତମ୍ଭକାର। ଶ୍ରୀ ସାମନ୍ତରାଙ୍କ ଅନ୍ୟ ଦୁଇଟି କବିତା ବହି ସବୁରି ଉପରେ ମଣିଷ ସତ୍ୟ, ମାଟି ମଣିଷର କବିତା ଆଗରୁ ପ୍ରକାଶିତ। ସ୍ୱାଭିମାନର ଅନ୍ତଃସ୍ୱର ଓ ବିକାଶର ରାଜନୀତି ପୁସ୍ତକର ଲେଖକ। ମଣିଷର ବାର୍ତ୍ତାବହ ସ୍ୱାଭିମାନର ସମ୍ପାଦକ।

– ସମଦୃଷ୍ଟି ପବ୍ଲିକେସନ୍ସ
ଭୁବନେଶ୍ୱର-୭୫୧୦୨୧